ଗ୍ରାମାୟଣ

.ରଚନା
ଲୋକରତ୍ନ ଡକ୍ଟର କୁଞ୍ଜବିହାରୀ ଦାଶ
ଉଦୟଶ୍ରୀ, କଟକ-୧୨

ପ୍ରକାଶକ
ଗୋବିନ୍ଦ ଚରଣ ପାତ୍ର
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦବିହାରୀ, କଟକ-୭୫୩୦୦୨

ପ୍ରଚ୍ଛଦ
ଅସିତ ମୁଖାର୍ଜୀ

ପ୍ରଥମ ପ୍ରକାଶ
ସାବିତ୍ରୀ ଅମାବାସ୍ୟା—୧୯୮୭

ମୁଦ୍ରଣ
ଗୁରୁପ୍ରସନ୍ନ ପ୍ରେସ୍
ଝୋଲସାହି (ନୂଆକଲୋନୀ)
କଟକ-୭୫୩୦୦୧

ମୂଲ୍ୟ ଅଠର ଟଙ୍କା

GRAMAYANA

Written by :
Lokaratna,
**Dr. Kunjabehari Dash**

Published by :
**Gobinda Charana Patra**
Orissa Book Store
Binodbehari, Cuttack-2

1st Edition—1987

**Price : Rs. 18/-**

Digitized by srujanika@gmail.com

# ଉତ୍ସର୍ଗ

ସ୍ନୁ ରୁଯୀ ନାନ୍ମ,

'ବିନା ଅପରାଧେ ତୋ ସଂସାର ହେଲା ପିତା
ତୁ ଏଇ ଯୁଗର ଗାଁ ଗହନର ସୀତା ।'

ତୋ କଥା ମନେ ପଡ଼ିଲେ ଲୁହଭରା ସେଇ ଯୁଗର ଗାଁ ମୋର ମନେ ପଡ଼େ ।

ତୁ ସଂସାରରୁ ବିଦାୟ ନେବାର ୪୦ ବର୍ଷ ପରବର୍ତ୍ତୀ ଗାଁ ଏ, ଲହୁଲୁହାଣ ।

ତୁ ଯଦି ଏମିତି ଗୋଟେ ଗାଁରେ ଜନମି ଥିବୁ, ଦୈବକ୍ରମେ 'ଗ୍ରାମାୟଣ' ପଢ଼ିବୁ, ମିଛୁମଣି ଠିକ୍ ଲେଖିଛି କି ନାହିଁ, ମୋତେ ଲେଖି ଜଣାଇବୁ । ଏ ଭାଷାର ବହୁ ଉଦାସୀନ ପାଠକଙ୍କ ପରି ଚୁପ୍ ରହିଯିବୁ ନାହିଁ, ତତେ ସାତ ଥର କର ମୋ ରାଣ ।

୨୭ ବର୍ଷ ପରେ ଆଲମାଲକାର ଅଳଆ ଟୋକେଇରୁ ଉଦ୍ଧାର ପାଇଥିବା ଏ ଡାଇରୀଟି ତୋ ହାତରେ ଦେଲି ।

ମୋ କଥା ଏ ଜନମକୁ କଣ ମନେ ଥିବ ?

—କୁଞ୍ଜ

Digitized by srujanika@gmail.com

# ଦୁଃଖ କାହିଁକି ?

ମିଛୁର ବଡ଼ ପୁଅ ଖଚୁ; ସେ ବା ଘରେ କେତେବେଳେ ଥାଏ ? କହ୍ନପୋଛୁ ଯିବାକୁ ବେଳ ପାଇଲା ନାହିଁ । ମିଛୁର ଚୁଣ୍ଡ ଦମ୍ ଦିନେ ହଠାତ୍ ବନ୍ଦ ହୋଇଗଲା । ଭାରି ବେମାର ଅଛି ଶୁଣି ଶେଷ ଦର୍ଶନ ଲାଗି ତା ଘରକୁ ଯାଇଥିଲି । ପହଞ୍ଚିଲା ବେଳକୁ କାନ୍ଦବୋବାଳି ପଡ଼ୁଛି । ମାଲଭାଇ କୋକେଇରେ ନଦ୍ଦ ସାରିଲେଣି । ଖଚୁ ଯାଇଚି ବାରିକ ଡାକି—ମୁଖାଗ୍ନିର ନିଆଁ ବରଆଟି ଧରି ସେ ଶବ ଆଗେ ଆଗେ ଯିବ ।

କୋକେଇ ଚାରିପାଖେ ଥୁଆ ମିଛୁର ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ—ବଟୁଆ, ଭାଙ୍ଗଘୋଟା ପଥରକୁଣ୍ଡି, କେନ୍ଦୁବାଡ଼ି, ପାନଛେଚୁ, ନାସଦାନି, ଝରି କଲମ; ତା ମଧ୍ୟରେ, ଆଶ୍ଚର୍ଯ୍ୟ, ଖଣ୍ଡେ ଖାତା—'ଗ୍ରାମାପୁଣି—ମିଛୁମଣି';

ଏଁ, ମିଛୁ ବହି ଲେଖେ ! ଲୁଚୁଛପାରେ ତ ଏ ସଂସାରରେ କେତେ କ'ଣ ଚାଲେ, ଏ ତ ଭଲ କଥା; ଲୁଚାଇବାର କଣ ଅଛି ? କାହିଁକି ଲାଜ ? କାହାକୁ ଭୟ ?

ଏ ତ ଦରପାଠୁଆ; ଦେଖିବା ଦେଖି, କଣ ଲେଖିଛି ! ମନରେ କୌତୂହଳ ।

ଫେର୍ ଭାବିଲି—ଚୂହାଳୀକ ପୂଜା ନେଇ ନ ଥିବା ଗାଉଁଲି ତ କେତେ କବି, କେତେ କଥାକାର ହୋଇଛନ୍ତି । ଦରପାଠୁଆର ତ କଥା ଇ ନାହିଁ । କିନ୍ତୁ ଏ ଖାତାଟି ଏଠି ପକେଇଛନ୍ତି କାହିଁକି ?

କିଛି ନ ଜାଣିଲା ପରି ସେ ଖଣ୍ଡି କାଖରେ ଜାକି ଖସି ଆସିଲି ଓ ଜରୁରି କାମ ଥିବାରୁ ସଙ୍ଗେ ସଙ୍ଗେ କଟକ ଚାଲିଗଲି ।

Digitized by srujanika@gmail.com

ଶୁଦ୍ଧି କ୍ରିୟା ପରେ ଧନେ ଖରୁ ମତେ ପଗ୍ଚରିଲ୍—ବାପାଙ୍କ ଆଜ୍ଞା ଥିଲ—ସେ ଖାତା ଖଣ୍ଡି ଚିତାନିଆଁରେ ପୋଡ଼ ଦବାକୁ, ଆଜ୍ଞାପତ୍ର ପଢ଼ି ଦେଖିଛୁ ।

ତାକୁ ପଗ୍ଚରିଲି—ଜୀବନକାଳରେ ବାପା କଥା କେବେ ମାନି-ଥିଲୁ ? ମଲ୍ ପରେ ଆଜ୍ଞା ପାଳି ପାରିଲୁ ନାହିଁ ବୋଲି ଦୁଃଖ କାହିଁକି ?

ମିଛୁମଣି ଦୃଷ୍ଟିରେ ବିଂଶ ଶତାବ୍ଦୀ ଷଷ୍ଠ ଦଶକ ଓଡ଼ିଶୀ ଗ୍ରାମର ବିଶ୍ୱସ୍ତ ଚିତ୍ର ଏ । ଗୋଟିଏ ଭାତ ଚିପିଲେ ଯାହା, ହାଣ୍ଡିଟା ଚିକଟିଲେ ସେଇଆ । ବୁଝିଲେ ଗୋଟା ଗ୍ରାମୀଣ ଓଡ଼ିଶାର ମୋଟାମୋଟି ଚିତ୍ର ଏଇଆ ବା ଏମିତି ।

—ସଂକଳକ—

Digitized by srujanika@gmail.com

# ଆଜ୍ଞାପତ୍ର

ମୁଁ ଜଣେ ଅଲେଖକ । ମନରେ କଣ୍ଡୁ ଉଠିଲା । ଗ୍ରାମ୍ୟ ଗଳ୍ପ, ଆମ ଏଇ ଗାଁ ବିଷୟରେ । ମୁଁ ଗୋଟାଏ କୂଅ ବେଙ୍ଗ; ଗାଁବାଲାଙ୍କ ଛଡ଼ା ଆଉ କାହା କଥା ବା ଜାଣେ ?

ହେଲେ କଣ ଲେଖିବି ? ରାମାୟଣ ମନେ ପଡ଼ିଲା । ଏ ଗାଁ ଉପରେ ଆଖି ପକାଇଲି—ବହୁତ ରାମା, ରାମୁ; ବାପା କଥା ମାନୁଥିବା, ସତକୁ କଣ୍ଠି ମାଳା କରିଥିବା ଜଣେ ରାମଚନ୍ଦ୍ର ନାହିଁ । ମିଛୁଆ, ଅମାନିଆଁ ଖଣି ପଡ଼ିଛନ୍ତି । ବଡ଼ ଭାଇ ଆଜ୍ଞା ପାଳିବାକୁ ତତକ୍ଷଣ ଜଣେ ଲକ୍ଷ୍ମଣ ବି ପାଇଲି ନାହିଁ, ଯେ ନିଜ ମାଇପକୁ ଘରେ ଛାଡ଼ି ଭାଇଭାଉଜଙ୍କ ସେବା ଲାଗି ବଣରେ ପଶିବ । ଭରତ ବା ସୀତା ବି କାହିଁ ନାହିଁ, ଯଦି ବା ସେହି ନାମର କେତେ ଅଛନ୍ତି ।

ଦୁର୍ଯୋଧନ ପରି ହିଂସୁକୁଟିଆ, ଦୁଃଶାସନ ପରି ହୁଣ୍ଡା, ଶକୁନି ପରି ପରଘରବୁଡ଼ା ବହୁତ; ଛୁଞ୍ଚି ମୁନରେ ମୁନେ ଜାଗା ନ ଛାଡ଼ି ନିଜ ମୁଣ୍ଡ ଉପରକୁ ଠେଙ୍ଗା ପାହାର ଆଣୁଛନ୍ତି କାହିଁ କେତେ । ତେଣୁ ମୋ 'ଗ୍ରାମାୟଣ'ଟା ଭାଗବତ ବା ରାମାୟଣ ପରି ଓଁ ହୋଇ ମହାଭାରତ ଆଡ଼କୁ ମୁହାଁଇଲା ଓ ସେହିପରି ଇତି ହେଲା । ଏଥିକି ଭାବନା କାହିଁକି ?

କେତେ କେତେ କବିଙ୍କ ପୋଥି ତ ପୋକ କାଟି ଧୂଳି କରି ଦଉଛନ୍ତି; ମୋର ଗାଁ ମାଦଳାଟା କୋଉ ଛପା ହଉଚି !

ଧାନ ଉଷୁଆଁ ହାଣ୍ଡି ପୋଛି ଆଣିଲେ କେତେ କଳା । ସେମିତି ଗାଁଟାକୁ ଝାଡ଼ି ଦେଲାକ୍ଷଣି କେତେ କଳଙ୍କ ! ଘର ନିଆଁ ବୋଲି କିଏ ଅଣ୍ଟିରେ ପୂରେଇବ ?

Digitized by srujanika@gmail.com

ଲେଖି ସାରିଲା ପରେ ମନର ବୋଝ ଖଲାସ୍ ହେଲାପରି ଲାଗୁଚି । ତଥାପି କଷ୍ଟ—ମୋ ଗାଁର କଳଙ୍କଗୁଡ଼ାକ କାହିଁକି ଉବାଦ ଗାଁ ଲୋକେ ଜାଣିବେ ? ଫେର୍ ଭାବିଲି—ଜାଣିଲେ ଜାଣନ୍ତୁ । କୋଉ ଗାଁ ସେଥିରୁ ବାଦ୍ ଯାଇଚ୍ଛି କି ?

ବିକାର ଆସିଲା; ଓକାର ଉଠିଲା । ବାନ୍ତି କରି ପକାଇଲି । ତାକୁ ପାଉଁଶ ଘୋଡ଼ାଇ ଦେବ—ମାନେ ମୋ ଚତାନଅାଁ ପାଉଁଶ ତଳେ 'ଗ୍ରାମାୟଣ'ଟି ଲୁଚିଯିବ, ଯେମିତି ଲୁଚିଯିବ ମୋ ବଞ୍ଚିଥିବା କାଳର କେତେ ବ୍ୟବହୃତ ଦ୍ରବ୍ୟ ।

'ପୁତ୍' ନାମକ ନରକରୁ ତ୍ରାଣ କରିବା ଲାଗି ଯୋଉ ବାଳୁଙ୍ଗାଟି ମୋ କୁଳକୁ ଆସିଚି, ସେ ମୋତେ ମୁଖାଗ୍ନି ଦେବ । ତାକୁ ମୋର ଆଜ୍ଞା—

'ଜିଅନ୍ତେ ନ ଦେଲୁ ତୁଣ୍ଡେ
ମଲେ ଦେବୁ ବେଣା ମୁଣ୍ଡେ ।'

—ମିଚ୍ଛୁମଣି—

Digitized by srujanika@gmail.com

## ।। ଏକ ।।

ଶୁଣ ଶୁଣ ହେ। ନଗ୍ରଜନ
ମିଚ୍ଛୁମଣିଙ୍କ ଗ୍ରାମାୟଣ ।
ଝଲେ ଗୃଲଲେ ଦଶରଥ
ମାଙ୍କଡ଼ ଖାଇଲେ କୋଳଥ ।
ମୁଗୁର ଭିତରେ ଶ୍ରୀହରି
ମାଙ୍କଡ଼ ଖାଇଗଲେ ଝରି ।
ଗ୍ରାମଚରିତ ଗ୍ରାମାୟଣ
ପ୍ରବଳ ଏଥି ଦଶାନନ ।
ଅବାଟ ବାଟ ବୋଲ ଗଣି
ଗୀତେ ଭଣିଲେ ମିଚ୍ଛୁମଣି ।

ନୁହେ ତପୀ, ନାହିଁ ଜଟା,
ଜାଣେନାହିଁ ମିଠା କଥା ।

ଲାଗେ ଦୁଃଖ, ଲାଗେ ଧନ୍ଦା, ଘର କଥା ଭାବି ଭାବି ମୁଣ୍ଡ ମୋର ହୁଏ ଚନ୍ଦା । ବୟସ ମୋ ଯାଏ ବଢ଼ି

ଗ୍ରାମ ଗଣ୍ଡ ଖଣ୍ଡ ଦେଖି ମନ ମୋର ଯାଏ ମରି । ଋଷି ଲେଖେ ଯା ଉଚିତ, ମୁଁ ଲେଖଇ ଘଟେ ଯାହା, ନିତି ନିତି ଗ୍ରାମେ ଘରେ । ଅପ୍ରିୟ ଯେ ସତ୍ୟ କଥା ମୋ କଲମୁଁ ଝରେ—ଝରେ·····

Digitized by srujanika@gmail.com

ପାଠୁଆ ଲୋକ ଜୀବନୀ, ସ୍ମୃତିକଥା କି ଡାଇରୀ ଲେଖନ୍ତି; ମୁଁ ଘୁରି ପାମରଟାଏ; କାଗଜରେ କେବେ ବୁନ୍ଦା ଦେଇନାହିଁ । ଏବେ ଲେଖକରେ ନାଆଁ ଲେଖେଇବାକୁ ବାହାରିଲେ 'କଇଁଚ ବେକ କାଢ଼ିଚି' ବୋଲି ଲୋକେ ଆଙ୍ଗୁଠି ଦେଖାଇବେ ।

ପୁଣି ବୁଢ଼ା କାଳ ପାଠ, ଛଡ଼ୁଫୁଟା କାଠ । ଏ ବୟସରେ ମୁଁ ବରଲୁ ନୁହେଁ, କି ବରଯାତ୍ରୀକ ନୁହେ । ଯେ କାହିଁକି ନୁହେ, ସେ କଣ ବସି ଲେଖେ ? ଦିନେ ନାହିଁ କି କାଲେ ନାହିଁ, ଆଜି ଗନ୍ଧାପୁନଅଁ ଦିନ ମାଇଁ ସାଜିଛି ! ମୋ ସରସ୍ୱତୀ କଣ ବଗୁରିବେ ?

ଲେଖକ କେମିତି ? ମୁଁ ତ କେବେ ଦେଖିନାହିଁ, ସେ କଣ ବାସନ୍ତି ? ସେ କଣ ଚକ୍ ଚକ୍ କରନ୍ତି ? ତାଙ୍କ ମୁହଁରୁ କଣ ଜ୍ୟୋତି ବାହାରେ ? ସେ ଗୁଲିଲେ କଣ ବାଟ ହସେ ? ସେ ବସିଲେ କଣ ହାଟ ବସେ ?

ଲେଖକ କେମିତି ହୁଅନ୍ତି ? ତପ କରୁ କରୁ ତପୀ, ସେମିତି ଲେଖୁ ଲେଖୁ ତ ଲେଖକ ହୋଇଥିବେ, ଆଉ କଣ ? ନାଇଁରେ ତା ନୁହେ; ତା ହୋଇଥିଲେ ବଟିଆ ମାହାନ୍ତି ତ ନିତି ଦଲିଲ୍, ଦସ୍ତାବଜ୍, ପଟା, ପାଉତି ଲେଖୁଚି; ବୈଷ୍ଣବ ନାହାକ ତ ପାଞ୍ଜି ଲେଖୁଚି, ସେ ଗୋଟେ ଲେଖକ ହୋଇଥାନ୍ତା !

ଯା ଭିତରେ ଗୋଟେ କିଛି କମିଆଁ ଅଛି । କିଏ କିଛି ଗୋଟେ ମନ୍ତ୍ର କରିଦିଏ । କିଏ ମନରେ ପଶି ଡାକିଯାଏ, ନଇଲେ ସେ ସାଇଁ ସାଇଁ ଲେଖିଯାଏ କେମିତି ? ମୁଁ ତ କାଇଁ ସେମିତି ଲେଖିପାରୁନି !

ଲେଖକ ଲୋକଙ୍କ ପାଇଁ ଲେଖେ । କାଳେ ଭଲ ହବ ନ ହବ ମନରେ ତାର ଡର । ନାଆଁ କରିବା ତାର ଲକ୍ଷ୍ୟ । ସୁନାମ ବଦଳରେ ବଦ୍‌ନାମ୍ ହେଲେ ଯେ କଥା ସରେ ! ପାଠକ ତାର ସପ୍ତପୁରୁଷ ଉଦ୍ଧାଳିବେ !

ମୁଁ ସେ ଦିଗରୁ ନିଧଡ଼କ । ମୁଁ କାହା ଲାଗି ଲେଖୁନାହିଁ । ମୋ ନିଜ ଲାଗି ଲେଖୁଛି । ଭଲ ହେଲେ କେତେ, ନ ହେଲେ କେତେ ।

Digitized by srujanika@gmail.com

ଆମ ଏ ମଫସଲରେ ଯେତେ ଇଚ୍ଛା ସେତେ ଗୀତ—ଗହ୍ଵାର ଖାଲରୁ ବଣବୁଦା, ଗାଁଗହଳରୁ ମଶାଣିପଦା, ନଈ ଧାରରୁ ପୋଖରୀ ତୁଠ; ଗୋଟେ କଣ ଏମିତି ଘର ଅଛି ଗାଁରେ, ଯୋଉଠି ମାଇପେ ଛଗ ପକାନ୍ତି ନାହିଁ କି ଛଟା ମେଲନ୍ତି ନାହିଁ ? କୋଥଡ଼ୀ ବୁଡ଼ୀ କାହାଣୀ ପେଡ଼ି ଖୋଲେ ନାହିଁ ? ଏଠି ଯେତକ ଚଟାମୁ ରୁଜ, ଯେତକ ଗୀତ, ସେତକ କଥା । ନଜ ନାଆଁ ଦସ୍ତକତ କର ଆସୁ ନ ଥିବା ଲୋକ ଯଦ ମନକୁ ମନ ଗାଇଯାଉଛନ୍ତି, କହ ଯାଉଛନ୍ତି ଯେ ଭୁଣ୍ଡରେ ବାଟୁଳି ବାଜୁ ନାଇଁ, ମୁଁ ଲେଖିପାରିବ ନାହିଁ କାହିଁକ ? ଅନାବନା ବୁଦାର କଣ ଫୁଟିବାର ଅଧିକାର ନାହିଁ ? ବଣ ଫୁଲର ବାସ କଣ ବଗିଚ ଫୁଲ ବାସଠାରୁ ଊଣା ?

ହଉ, ଆଗେ ଗୋଟେ ଶ୍ଳୋକ ଲେଖିବା ଦେଖି ।

ଅଳ୍ପକ ସଳ୍ପକ ଲୋକ
କବିତା ଲେଖଇ ଯଦ
ଘର ଗର୍ବେ ଫାଟିପଡ୍ରେ
ମିଛୁ ଯଥା ଫଡ଼୍‌ଫଡ଼ାୟତେ ।

ଆରେ ହଉଚ ବା !

ହଁ, ଗ୍ରେପାଟା ହଉଚ !

ନଜ ଲେଖାଟା ପଢ଼ି ବାଃ ବାଃ ହଉଥିବା ମୂର୍ଖ କଣ ସଂସାରରେ ଅଳ୍ପ ଅଛନ୍ତି ? ମନେ ମନେ ପଉରୁଷି ହୋଇ କ ଲଭ ? ପାଠକ ପ୍ରଶଂସିଲେ ସିନା ତାର ମୂଲ୍ୟ ଅଛି !

ଆଚ୍ଛା, ଗୀତର ହାଓ୍ୱାରେ ମୁଁ ବଢ଼ିଚ । ହସିଲେ ଗୀତ, କାନ୍ଦଲେ ଗୀତ, ନାଚଲେ କୁଦଲେ, ଖାଇଲେ ଶୋଇଲେ ଗୀତ; କଥା ଅଛି—ପାଠ ପଢ଼ିଥିଲେ ଗୀତ ଗାଉଥାଏ ବାଉଶ କଣ୍ଠର ପୁଅ । ପାଠ ମୋଟେ ନ ପଢ଼ି ତ ବେଶୀ ଗୀତ ବୋଲନ୍ତି ଲୋକେ । ପଢ଼ିଲେ ବରଂ ଭୁଣ୍ଡ ଫିଟେନାଇଁ; ଲଜ ମାଡ଼େ—କାଲେ କିଏ ଶୁଣିବ !

Digitized by srujanika@gmail.com

ଆଚ୍ଛା, ଶ୍ଳୋକ ଗୁଡ଼; କବିତା ଗୋଟେ ଲେଖାଯାଉ; ହଉ ଏବେ, କିଏ ନାହିଁ କରୁଚି ?

'ହୁମୁରି ଭଇ ରେ ହୁମୁରି ଭଇ
ଚାଲିଚି ସୁଆଶ୍ରୀ ଧପଡ଼ ଧାଇଁ
ପାଣିକାଦୁଅରେ ଗୋଡ଼ ଖସୁଅଛି
ନହକା ବେତ ମୋ କେତେ ବାହୁନୁଚି
ଦୂରକୁ ଚାହିଁ !
କାହାର ପୂଇ ସେ କାହାର ମଲ୍ଲୀ
ହାତ ବଢ଼ାଇଲି ତୋଳିବି ବୋଲି
ଯାହାର ଫୁଲ ସେ ନେଲା ରେ ତୋଳି;
ଶିଶୁପାଳ ହୋଇ ଫେରିଲି ଘରେ
ଭଣେ ମିଛୁମଣି କୃଷ୍ଣ ହରେ ।

ଆରେ ଏ କଣ ଲେଖିଲି ବା ? ଲୋକେ ବୁଢ଼ା ବେହିଆ ବୋଲି କହିବେ; ଛି-ଛି; ମାଲି ଗଡ଼େଇବା ଲୋକ ପ୍ରେମ କରୁଚି !

ଅମଣିଆଁ କଲମ ମୋର ଅମଡ଼ା ମାଡ଼ ଚାଲିଚି; ଓଃ, ଝାଲନାଳ ହେଇ ଗଲିଣି । ପଦ ପକେଇ କବିତା ଲେଖିବା ଏକ ଝକ୍‌ମାରି କାମ । ଏତେ ଝିନ୍‌ଝଟରେ ପଶେ କିଏ ରେ ବାବା !

କବି ସତ ମିଛ ମିଶେଇ କହନ୍ତି । ମୁଁ ତ କଞ୍ଚା, ଅଚାଖୁଆ ମଣିଷଟାଏ । ସେକ୍‌ଟୋକ୍ କଥା କହେ, ଖାଲରେ ପଡ଼ୁ କି ଢ଼ିପରେ ପଡ଼ୁ; ରଜା ମହାରଜାଙ୍କ ଦହରେ ବାଜୁ, କି ନୁଖୁରି ମାଗିଆର ଟାଙ୍ଗରି ମୁଣ୍ଡରେ ଠୋକର ଦଉ ।

ରମାୟଣ ଋଷିଙ୍କ ସାଙ୍ଗେ; ମୁଁ ତାଙ୍କ ଜବାନ୍ ବୟସର ସାଙ୍ଗ ଜଣେ । ସେ ରତ୍ନାକର, ମୁଁ ମିଛୁ; ତାଙ୍କ ହାତରେ ଠେଙ୍ଗା, ମୋର ଖାଲି ହାତ । ଖାଲି ହାତରେ କଣ କମ୍ ଖଣ୍ଡିଗିରି ହୁଏ କି ?

ସେ ଠେଙ୍ଗା ଫୋପାଡ଼ି ଦେଲେ, ହେଲେ ହୁଙ୍କା । ତାପରେ ଧଇଲେ କଲମ । ଲଙ୍ଗଳ କଣ୍ଢି ଧରି ହଳ କରି ବଣ୍ଡି ବସିଥିଲି ମୋ ହାତରେ । ଲୁଚିଛପାରେ ମୁଁ ବି ଧଇଲି କଲମ ।

Digitized by srujanika@gmail.com

ଡାକୁଗିରି ପାପରେ ବାପ, ମାଆ କି ମାଇପ କେହି ଭାଗିଦାର ହେଲେ ନାହିଁ । ରତ୍ନାକର ରୁଷୁ ରୁଷୁ ବାଲମିକୀ ଋଷି ପାଲଟିଲେ, ଋଷି ହଉଁ ହଉଁ କବି ହେଲେ । ବଣ ଶିକାର ଘଟଣାଟାଏ ଦେଖୁ ଦେଖୁ ତାଙ୍କ ମୁହଁରୁ ଶ୍ଳୋକ ବାହାରି ପଡ଼ିଲା । କେତେ ଚଢ଼େଇ ଶିକାର ତ ଦେଖେ ନିତି ନିତି । କେତେ ହଣାମରା କାଣ୍ଡ ତ ଘଟିଯାଉଚି ଆଖି ଆଗରେ । କାହିଁ, ନସି ଫିଟିନ୍ତା ହେଲେ ! ମାଙ୍କଡ଼ା ପଥର ଗୁଣ୍ଡିଟା ମୋର ଆହୁରି ଆହୁରି ଟାଣ ହୋଇଯାଏ ।

ନପଟ ମଫସଲିଆଟାଏ, ଗାଁରେ ମୋ ବାହକ ଗଲା; ରାମତତ୍ତ୍ୱ କି ବୁଝିବ ? ଯୋଉଠି ଶାଗଖିଆକୁ ପେଜଖିଆ ଦେଖିପାରେ ନାହିଁ, ଦି'ଜଣ କଳି କଲେ ଆଉ ଜଣେ ନଖ ଘଷେ, ଦାଣ୍ଡପଟେ ନାରଦ, ବାଡ଼ପଟେ ନାରଦୀ ଗାଁକୁ ଜମେଇ ରଖିଥାନ୍ତି; ଆଙ୍ଗୁଳେ ହାଡ଼ ଲାଗି ଯୋଉଠି ଏକାପେଟର ଦି ଭାଇ ମୁଣ୍ଡ ଫଟାଫଟି ହଉଛନ୍ତି, ସେଠି ବସି ମୁଁ ରାମାୟଣ ଲେଖିବା ତ ଉଆଁଶିଆ କଥା ।

ବାପ ସାବତ ମା ଆଗେ ସତ କରଚି; ସେ ସତ ରଖିବ; ସୁନା ମୁକୁଟଟି ତଳେ ରଖି କଣ୍ଟା ମୁକୁଟଟିଏ ପିନ୍ଧି ଜଙ୍ଗଲରେ ପଶିବ ! ମାଇପ ତାକୁ ଓଲଟା ବୁଦ୍ଧି ଦବ ନାହିଁ, ରାଣୀମହଲ ସୁଖ ଗୁଡ଼ା ସବୁ ଅଳଙ୍କାରପତ୍ର କାଢ଼ି ଥୋଇ ସେ ବି ଯିବ ଗିରସ୍ତ ସଙ୍ଗେ । କୋଉ ଭାଇ, ମାଆ, ମାଇପ, ରାଜବାଟି ମଉଜ ଗୁଡ଼ା କଣ୍ଟାଝଣ୍ଟା ବଣକୁ ଯିବ, ନ ଖାଇ ନ ଶୋଇ ଚଉଦ ବର୍ଷ କାଳ ଭାଇ ଭାଉଜଙ୍କ ଜଗୁଆଳୀ ହବ ? କୋଉ ଭାଇ ପାଇଲା ରାଜସିଂହାସନକୁ ଭୋଗ ଦଖଲ ନ କରି ତା ଉପରେ ବଡ଼ ଭାଇଙ୍କର କଠଉ ହଳକ ରଖି ପୂଜିବ ? ନିଜ ବୁଦ୍ଧି କଉଶଳରେ ରାଜମୁକୁଟଟିଏ ଅର୍ଜି ଆଣିଥିବା ମାଆକୁ ଶୁଖିଲା ଧନ୍ୟବାଦଟିଏ ବି ଦବ ନାହିଁ ! ବଡ଼ଭାଇଙ୍କ ଅଭିଷେକ ମଉଗ୍ଗରେ ବାଧା ଘଟେଇ ଦୁର୍ଶ୍ଚିନ୍ତାରେ ବାପାଙ୍କ ଅକାଳମୃତ୍ୟୁ ଘଟେଇଥିବାରୁ ଓଲଟି ମାଆକୁ ଗାଳିଦବ ! ଏମିତି ଗୋଟେ ଭାଇ ତ ଏଠି କୋଉଠି ଆଖିରେ ପକେଇବାକୁ ମିଳିବ ନାହିଁ, ଗାଁରେ ଯୋଉ ମଣିଷ ଦେଖୁଚି, ସେଇ ମଣିଷ କଥା ଲେଖିବି । ଗୋବର ଗଡ଼ିଆରେ ବାସ କଇଁ ଫୁଟେ ନାଇଁ, ସେ କଥା କହୁ ନାଇଁ । ମହାତ୍ମା

Digitized by srujanika@gmail.com

ଲାଗି ସୂନା ଭୂଇଁଟାଏ ଲୋଡ଼ା, ତା ବି କହୁନାଇଁ । ବରଂ ଓଲଟା କଥା ଘଟେ । କୃଷ୍ଣ କଂସ ବନ୍ଦୀଶାଳାରେ ଜନ୍ମ ହୁଏ । ମହାତ୍ମା ମଧୁବାବୁ ବା ଗୋପବନ୍ଧୁ କାହୁଁଅ ଅସକର ଗାଁରେ ଜନମ ହୁଅନ୍ତି । ହେଲେ ମୋ ଜୀବନକାଳ ମଧ୍ୟରେ ସେ ଦୃଶ୍ୟ ଦେଖିନାଇଁ ।

ମୋ ପିଲାଦିନେ ଆମ ଗାଁରେ କେତେ ମଣିଷ ଥିଲେ । କିଏ ହାଣ୍ଡି ପରି ଧସେଇ ଗୃଲୁଥିଲା । କିଏ କିଛି ଧନ କମେଇଛି ବୋଲି ଇନ୍ଦ୍ର, ଚନ୍ଦ୍ର ମାନୁ ନ ଥିଲା । କିଏ ଗାଲୁଭୁରୁଡ଼ରେ ଜଗତ ଜିଣିଥିଲା, କିଏ ନେଉଳ ଭଳି ପରି ସବୁ କ୍ଷେତ୍ରରେ ପଶି ସୂତ୍ରରେ କାମ ହାସଲ କରି ନଉଥିଲା, କିଏ ଥିଲା ଚହଟ ଚକ୍‌କଣ, କିଏ ଧୂଳି ଧୂସରିଆ, କିଏ ରସ-ବିନୋଦିଆ, କିଏ କଥାଚନ୍ଧିଆ । କିଏ ଏଠି ଫୁସ୍ ଫୁସ୍ ସେଠି ଫୁସ୍ ଫୁସ୍ ହଉଥିଲା, ବି ଆଉ ହାତ ଚକ୍‌କଣ କରୁଥିଲା, କିଏ ବିହରୁ ମଳି ଟିକେ ଗୁଡ଼୍ ନ ଥିଲା, ମଲାପରେ ବହୁ ଦୁଃଖରେ ଛଞା ଧନ ଭୂତ ଖାଇଲେ । କିଏ ଥିଲା ହାତଖୋଲା, ଦେଇ ଦେଇ ଦେବାଳିଆ ହେଇଗଲା; କାହାର ଖାଇବାରେ, କାହାର ବା ଖୋଇବାରେ ଆନନ୍ଦ । କିଏ ମଣିଷ ଦେଖିଲେ ଦୁର୍‌ଦୁର୍ ମାର୍‌ମାର୍ କରେ, କିଏ ବା ଡାକହାକ ଅ.ଳାପ କରେ । କିଏ ଥିଲା ମନମରା, କିଏ ଥିଲା ହସକୁରା, କିଏ ବା ମାଧିଆ ଭଳି, ସବୁ କଥାକୁ ହଇ ହଇ କରୁଥିଲା । ଏମିତି କେତେ ଆକୃତି, କେତେ ପ୍ରକୃତିର ମଣିଷ । କୁଆଡ଼େ ଗଲେ ସବୁ ? ଏବେ ଚିହ୍ନବର୍ଣ୍ଣ ନାଇଁ । ଏବେ କିଏ ମନେ ପକାଏ ? ଆଖି ଆଢ଼ୁଆଳକୁ ଗଲେ ମନରୁ ଗଲା ।

ଦେଉଳଟାଏ ତୋଳିଥିଲେ କି ପୋଖରୀଟାଏ ଖୋଳିଥିଲେ ଲୋକେ ହିନାକେତେ ମନେ ରଖନ୍ତି । ତାପରେ ସେ ଯଶ ପାଣି ଫୋଟକା, ପାଣିରେ ମିଶିଯାଏ । ତାପରେ ଭୁହାକୁ ଭୁହା ମଣିଷ—ଗୋଟେ ଗୋଟେ ଫସଲ ଏ, ଦିନକିଆ, ବର୍ଷିକିଆ ବା ଶହେବର୍ଷିଆ ।

ତେବେ କାହିଁକି ମିଛକୁ ମୋର ଏ ଆଳମାଳିକା ? କବି ସୃଷ୍ଟି କରେ ଅମୃତକୁଣ୍ଡ । ମୋର ଏ ଗୋଟାଏ ଖତଗଦା । ଏ ଖତ କ'ଣ

Digitized by srujanika@gmail.com

କୋଉ ମନି-ଶଙ୍କର ବଡ଼ଡରେ ସାହାଯ୍ୟ କରିବ ନାହିଁ ? ମତେ ଲେଖୁ-ଥିବାର ଦେଖିଲେ ଲୋକେ ଠୋକ୍‌କର ଦିଅନ୍ତ—ଏଠା କବି ନା ଫବି ? ଯୁ ନାଁ ତ ପାଠୂଆ, ପାଲ୍‌ବାଲ୍ କ ଚଇଣାଘୋଡ଼ା ନାଠୁଆ କେବେ ଭଣିତା କରିବା ଶୁଣିନାହୁଁ; ବୃଥା ସରୁନାଇଁ ଯେ ମିଛକୁ ଗୁଡ଼ାଏ ଗାଉଛନ୍ତି ! ପାଗଳା ନା କଣ ?

ହେଲେ ମୋ ପାଗଳାମି ମୋଠେଇଁ । ମୁଁ କାହା ଘର କ ବାହାରର ଶାନ୍ତିଭଙ୍ଗ କରେ ନାହିଁ । ମୋ ଲାଗି ଗାରଦ କ ଡାକ୍ତର ଲୋଡ଼ା ପଡ଼େ ନାଇଁ ।

ମୋର ଏ ଟିପାଟିପି ଖାତା ଗୋଟାଏ ମଣିଷ ଠୋକେଇ । ଯୋଉ ଧାଡ଼ିକ ଛୁଇଁବ, ସେଥିରୁ ମଣିଷ ବାସନା ପାଇବ । ପୃଷ୍ଠାକୁ ପୃଷ୍ଠା ଗଡ଼େଇ ଗଲେ ମଣିଷର ତାତଲ ନିଃଶ୍ୱାସ ଦେହରେ ବାଜିବ । ସବା ଶେଷକୁ ତାତଲ ହାଓ୍ୱାର ବାମ୍ଫ ଆଣିଠାଏ ପାଇଯିବ ।

ସାପ ପେଡ଼ି ପରି ଦିଶେ; କିନ୍ତୁ ସାପୁଆର ପଦ୍ମତୋଳା ଲୋଡ଼ା ପଡ଼େନାଇଁ । ଆପେ ଆପେ ମଣିଷ ନାମକ ଜନ୍ତୁଟି ଫଣା ଟେକି ଉଠେ । ସାପ ଖେଳେଇବା ବା ଗୋବନ୍ଦମୁଷା ନଚେଇବା କେଳାର ବେଉସା । କିନ୍ତୁ ଲେଖାଲେଖିଟା ମୋ ମନଖୁସିର କଥା ।

ଏଇ ମୁହୂର୍ତ୍ତିଟିରେ ମୁଁ ଇଚ୍ଛାମୟ ପୁରୁଷ, ଗୋଟେ ଟିକି ଭଗବାନ୍ । ହେଲେ ମୁଁ ତାଙ୍କ ପରି ଖିଆଲି ନୁହେ । ସେ ଥିଲାବାଲାକୁ ପିଲ ବକଟେ ଦିଅନ୍ତ ନାଇଁ, ନଥିଲା ଘରେ ପହଲକୁ ପହଲ ଛୁଆ, ସେଥିରୁ ବେଶୀ ଭାଗ ଝିଅ ଜନମାନ୍ତ । ତେଲିଆ ମୁଣ୍ଡରେ ତେଲ ଢାଳୁଥାନ୍ତି, ନୁଖୁରା ଦେହକୁ କୁଣ୍ଡେଇ କୁଣ୍ଡେଇ ଘାଆ କରୁଥାଏ । ମୁଁ ବୁଝିବାଟାର ଯେମିତି ଦିଅଁଙ୍କୁ ସେମିତି ପୂଜା କରେ, ବାଲଗିରଡ଼ା ମୁହଁରେ ଗୁଡ଼ଉଲ-ଭଜା ଦେଇଞ୍ଜେ ।

ସାଇପଡ଼ିଶା; ମନରେ ଥାଇପାରେ ରାଗରୋଷା । ଲେଖାଲେଖିର ସୁଯୋଗରେ ପ୍ରତିହିଂସାରେ ମୋ କଲମକୁ ମୁଁ କଲମହାସ କରିବି ନାହିଁ ।

Digitized by srujanika@gmail.com

ଗାଁ ପ୍ରତି ମୋର ମୋହ ଅଛି । ଗାଁବାଲାଙ୍କୁ ଭଲ ପାଏ । ମେଳଣ ଯାତ୍ରାରେ କି ବାଟଘାଟରେ ଭେଟ ହୋଇଗଲେ କୋଟିନିଧି ପାଇଲା ପରି ଲାଗେ । ତାଙ୍କୁ ଅଧେ ଆପଣାର, ଅଧେ ପର କରିଥାଏ ? ନାଇଁ, ନାଇଁ, ଗୋଟାପଣେ ଆପଣାର ହିଁ କରିଥାଏ ।

'ହିଁ, ମଉସା ବୋଲି କେବେ ପଦେ ଆକଟି କହିଛନ୍ତି; ଅଜା ଲେଖା ବୋଲି ଟିକେ ଇଙ୍ଗିତ କରିଛନ୍ତି, କାନ୍ଧହାତପକା ସାଙ୍ଗ ବୋଲି ଖେଳରେ ମନ ଅମେଳ ହେଲେ ଗୋଟେ ଅଧେ ବା ପକେଇଛନ୍ତି ।'

ତା ବୋଲି ତାଙ୍କ ଆଖିରେ କଲମ ମୁନ ଗେଞ୍ଜିବି ? କହିବା ଅପେକ୍ଷା ସହିବା ଯେ ବଡ଼ ଗୁଣ !

ଭଗବାନ୍ କାହିଁକି ସବୁଠୁଁ ବଡ଼ ? ଏଇ ସହିବା ଗୁଣରୁ । କ୍ରୋଧରେ ଅନ୍ଧ ହୋଇ ଶ୍ରୀବତ୍ସ ବ୍ରାହ୍ମଣ କେଡ଼େ ଗୋଇଠା ମାଇଲା ! ଆପଣା ଛାତିକି ଅାଉଁସିବେ କଣ, କଅଁଳ ପାଦକୁ କେଡ଼େ କାଟିଥିବ ବୋଲି ଓଲଟି ଆଉଁସି ପକାଇଲେ !

ଆମେ ମାନବା; ଟିକିକ କଥାରେ ତଳପା ରାଗ ତାଳୁକୁ ଚଢ଼ିଯାଏ । କଣ ବୋଲି କଣ କରିବସୁଁ । ମୁଣ୍ଡ ଥଣ୍ଡା ରଖି ସହିସମ୍ଭାଳି ସବୁ କରିବା ଗୋଟେ ବାହାଦୁରୀ । ଟିକି ଟିକି କଥା ମୁଁ ଧରିବି ? କଥା ମାଇଲେ ପରା ମୋଟ !

ତା ବୋଲି ଚୋରୀ, ଡକାୟତି, ହଣାମରା, ହରଣଚାଲି ବରଦାସ୍ତ କରିବି ?

କଲମ ଧଇଲା ଦିନୁଁ ଧର୍ମାସନରେ ବସିଲା ପରି ମତେ ଲାଗେ । କୁଆଡ଼କୁ ଡରିବି ନାଇଁ; ଯାହା ଠିକ୍‌ଠୋକ୍ ବିଚାରିବି, ଲେଖିବି ।

ଦିନେ ବାଳୁଙ୍ଗା ପିଲାଏ ଉଚ୍ଛୁଳିବା ବା ଉତ୍ତୁରି ପଶିବା ଦେଖି ସ୍ୱୟଂ ଭଗବାନ୍ ମୋରି ପରି ବ୍ୟସ୍ତ ବିବ୍ରତ ହୋଇଥିଲେ । ଲେଉଡ଼ା ପଡ଼ିଲାରୁ ନିଜ କୁଳ ବୁଡ଼େଇବାକୁ ଡରିଲେ ନାହିଁ । ଯୁଗସ୍ରଷ୍ଟାଙ୍କୁ ଏ ଖାତି ସାଜେ । ମୋ ହାତରେ ଖଡ଼ା ଶିଝିବ ନାଇଁ । ତଥାପି କଲମକୁ

Digitized by srujanika@gmail.com

ବଉଡ଼େଇଛନ୍ତି; ଏଥର ପଦୁଟିଏ ଯଦି ମନ ଛୁଏଁ ! କୋଉ ମହାପୁରୁଷ କି ମହାପୁରୁଷର ଯଦି ଉଦୟ ହୁଏ !

ଗାଁ ସମୂଳା ପଡ଼ିଯିବ, ଦେଖ ବ ।

ହେଉ ହେଲା ବନୁଁ ପତର ପତର କରି ଗାଁଟାକୁ ପଢ଼ୁଚି, ଏଇ ପୁରୁଷରେ କି ତାପରେ ଏମିତି ଗୁଡ଼ାଏ ମଣିଷ ଥିଲେ ବା ହେଲେ । ବଣି ଲଭିଯାଉଚି, ଜଳ ଉଠୁଚି, ଏ ସମସ୍ତର ସାକ୍ଷୀ ।

ସମସ୍ତର ମହାନାଟକରେ ଏଇ କେଉଁଟା ଦାଗ ରହିଯିବ; ଲୋକେ ଜାଣିବେ—ଜଗନ୍ନାଥ ଓଡ଼ିଶାରେ ଏମିତି ଗୋଟେ ଗାଁ ଥିଲା !.

ଭୟ—କଳଙ୍କରୁ ଗୁଡ଼ାଏ ସାଇଚି ଦେଲି କି ? ନିଜ ଗାଁର ବଦ୍‌ନାମ୍ ନିଜେ କଲି ' କୋଉ ପୋଖରୀରେ ଚଙ୍କ ନାହିଁ ?

ତାଇଶିଟି ଲେଖି ସାରିଲା ପରେ ମନ ହେଲା—ପୋଡ଼ି ଦେବି ! ହାତ ଗଲା ନାହିଁ ।

ମୋ ସାକନ୍ ହରିବୋଲ୍ ପୁର, ଜିଲେ ପୁରୀ । ଏ ଗାଁର ମାଟି-ଗୋଡ଼ି, ଗଛପତର ମତେ ସବୁ ସୁନ୍ଦର ଦିଶେ । ଡେଙ୍ଗା ଡେଙ୍ଗା ନଡ଼ିଆମାଳ, ବାଉଁଶବଣ; ଦୂରରୁ ମୋ ଗାଁଟା ମିଛିମିଛିକା କଣ୍ଟା ପରି ଦିଶେ ।

ଗ୍ରୀଷ୍ମେ ଶୁଖିଲା ଠୋଓ-ଠୋଓ । ଦୂର ଦୂରାନ୍ତର ଅପନ୍ତରାରୁ ଜାଲଜାଲୁଆ ଦିଶେ, ସୋରିକୁ ସୋରି ତାରକସୀ କାରିଗରୀ ପରି । ସିଆଡ଼ୁ ଖଣ୍ଡି ଆଭୁତ ମାଡ଼ି ଆସେ; ଚୋଟାରେ ଧସେଇ ଚଣେ । ଗଛବୃଛଙ୍କ ସଙ୍ଗେ ମୋ ମନ ବି ନାଚଉଠେ । ସେ ଉଡ଼େଇ ଦବାରୁ କି କଣ, ମାଡ଼ିଅସେ ଆମ୍ବ ଡାହାଣୀର ସୁଅ । ମାଛଗୋଳ, ଚହିଁକ ମଇଁଷି ଦୁଧୁରଙ୍କ ଘଣ୍ଟାଘଣ୍ଟି, ଏଇ ପୋଖରୀରେ ଆମେ 'ଗଙ୍ଗାନାରପୂଣ' କରୁ ।

ମେଘ ଉଠାଏ; କେତେ ଛଇଛଟକରେ ଲଟା ବିଜୁଳି ମାରେ । ବୁଢା ବୁଢ଼ା ବେଙ୍ଗଙ୍କ ଘାଗଡ଼ା ସ୍ୱର ବି ସେତେବେଳେ କାନକୁ ମିଠା ଲାଗେ । ଧୂମପବନ, ବରକୋଳ ପରି କୁଆପଥର ପରସ୍ତକୁ ପରସ୍ତ

Digitized by srujanika@gmail.com

କଗୃଢ଼ ହୋଇପଡ଼େ । ତାପରେ ଫେଣଲଗା ବର୍ଷା ଅସରା, ଆଃ, କି ଆନନ୍ଦ । ତାହୁକତାହୁକୀଙ୍କ କୁଆଉଆ ଗୀତ ସଙ୍ଗେ ତାଳ ଦେଇ ଦୂରରୁ ହଳିଆ ଗୀତ ଭାସିଆସେ—

'ପଧାନ ଘର ବୋହୂ ବୟସରେ ସାନ
ଶଢା ତ କୁଟାଉଚ୍ଛି ହୋ ମହୁପାଳ ଧାନ
ମହୁପାଳ ଧାନ ତ ଭନେ ଭନେ ଜାତ
ଶଢା ତ କୁଟାଉଚ୍ଛି ହୋ ରଜାଙ୍କ ଫୁଲୁହାଣ୍ଡି
ରଜାଙ୍କ ଫୁଲୁହାଣ୍ଡି ହୋ ବାମଗୋଡ଼ ଗ୍ରେଣ୍ଟା
ଶଢା ତ କୁଟାଉଚ୍ଛି ହୋ ମଧୁବନ ତୋଟା
ମଧୁବନ ତୋଟା ଚଉମୁହେଁ ବାଟ
ଲୁଗା ତ ପିନ୍ଧିଅଛି କଳାମେଘୀ ପାଟ
କଳାମେଘୀ ପାଟ ଚଉମୁହେଁ ଦଶୀ
ଶଢା ତ କୁଟିଛି ହୋ ଭାଉଜ କୋଳେ ବସି
ଶଢା ତ କୁଟିଛି ହୋ ଜାନୁ ପଉବନେ
ଦେଖୁ ତ ଥିବ କାନ୍ତ ହୋ ।'

ଭାଦ୍ରବର ଚଳ ମେଘ, ଆଶ୍ୱିନର ଗମ୍ଭୀରଭରା ଧଳା, ମଳିଗୁ କାଇଁଶ ଫୁଲ, ବଣବୁଦାର ଫିକାଲାଲ୍ ଲାଜକୁଳି, ଆଉ ପାଞ୍ଚଆଙ୍ଗୁଠିଆ, ଧଳା ଧଳା ଓଉଫୁଲ, ଲାଲ୍ ଗୋଜକାଠି ଆଉ ଧଳା, ଲାଲ୍ ଗଦଫୁଲ, ଅରମା ଯୋଡ଼ର ଧଳା, ନେଳୀ କଇଁ, ରାସ୍ତା ଧାରେ ଧାରେ କାକରଭରା ବୁଡିଆଣୀ ଜାଲର ଧଳା ଧଳା ପଦୁଅଁ, କାର୍ତ୍ତିକର ଚଉରାପୂଜା ହୁଳହୁଳିକି କୀର୍ତ୍ତନିଆଁଙ୍କ ଗାଁ ବେଢ଼ାବୁଲ, ବଡ଼ ବଡ଼ଆ ଗୀତକୁ ଡଙ୍ଗାଛଡ଼ା ଗୀତ ଓ ଆକାଶଦୀପ ଉଠା, ମଗୁଶୀର ଦାଣ୍ଡଓଳିଆ ଓଷାର ପାହାନ୍ତୀ ଗୀତକୁ ବାଉରୀ ଦାସର ହରିବୋଲ ଡାକ, କାନ୍ଥେ କାନ୍ଥେ ଧାନଶୀଷା ଶଢାକୁ, ଖଳାବାଡ଼ରେ କୋଠି ଆଉ ଦେଉଳ ଆକାରର କେଣ୍ଡାଝୁଲା ଧାନଗଦା ଦେଖି ମନ ଆନନ୍ଦରେ କୁରୁଳି ଉଠେ । ମାଘ ମାସର ଘନ କୁହୁଡ଼ି ଭିତରେ ପାଚିଲା ଝରାପତ୍ରର ଲହର, ଆମ୍ବବଉଳ ମହକଭରା ଚତୁର୍ଦ୍ଦିଗ, ଫଗୁଣରେ ଶୀତୁଳିଆ ମନଉଲ୍ଲୁସା ସକାଳର ମିଠା ମିଠା କିରଣ, ପାଚିଲା

Digitized by srujanika@gmail.com

କୁହୁଡ଼ିର କାକର ଝରଣ ଭିତରେ ଗଜୁରୁ ଥିବା କଅଁଳ ପତର ଖାଇ କଣ୍ଠକୁ ମଧୁରେଇ ଥିବା କୋଇଲିର କୁହୁ, ମନରେ କଷ୍ଟ ଚିନ୍ତାଦିକ ନ ଥିବା ଦଳ ଦଳ ମଣିଷଙ୍କ ମେଳଣ ଯାହା, ମୋ ପିଲାଦିନର ସୁଖଦୁଃଖଭରା ଗାଁଟି କୁହୁଡ଼ିରେ ହଜିଗଲେ ସୂର୍ଯ୍ୟ ତାକୁ ଖୋଜି ଖୋଜି ବାହାର କରନ୍ତି ।

ଉପରେ ପଡ଼ି ଭଲଲୋକି କରିବାକୁ ତିଆର କଜଳପାତିଆ ଆସି ବେଳେ ବେଳେ ଧାନକଟାଳୀଙ୍କ ଦାଆ ଦାଡ଼ରେ ପଡ଼ିଯାଏ । ଦୁଇ ପଟର ମାଡ଼ ରୋକିବାକୁ ଯାଇ ମଧ୍ୟସ୍ଥି ବେଳେ ବେଳେ ମାଡ଼ ଖାଏ, ମାରି ପଡ଼େ; ଏ ତ ନିତ୍ୟ ଅନୁଭବ ।

ପାଖ ପଡ଼ୋଶୀ ପକ୍ଷୀ, ମଣିଷକୁ ଛାଡ଼ି ଦଣ୍ଡେ ରହିପାରନ୍ତି ନାହିଁ ଯେମିତି ! ହାତିଅଦ୍ଧର ପାରି, ବାଡ଼ି ତାଳଗଛର ବଣି, ଚୁଲିରୁ ଓଳିକୁ ଆସ୍ତେ ଆସ୍ତେ ଖସୁଥିବା କୁଆ, ବାଡ଼ି ପୋଖରୀର କାଣ୍ଠିଆବଗ ଆଉ ହିଞ୍ଚୁଳଗଛର ଗଙ୍ଗେଇ, ବିଲଭିତରେ ମନଫୁଲିଣିଆ ବରଯାତ୍ରୀ ପରି ଉଡ଼ି-ଯାଉଥିବା ଧାଡ଼ି ଧାଡ଼ି ବିଦେଶୀ ପକ୍ଷୀ ଦେଖିବାକୁ ମତେ ଭଲ ଲାଗେ !

ମତେ ଭଲ ଲାଗେ ଗଞ୍ଜାରଭିତ୍ରା ସୋରିଷ ଖେତ, ବିଲଭିତ୍ରା ପାଚିଲା ଧାନ, ଗଛଭିତ୍ରା ନାଲିଆସିଆ ଶାଗୁଆ ଆମ୍ବ ବଉଳର ମଞ୍ଜରି, ଆଶ୍ୱିନର ଗଙ୍ଗଶିଉଳି ମୂଳ, କୃଷ୍ଣଚୂଡ଼ାର ସ୍ୱର୍ଗେ ଲାଗେ ଡାଳ, ମଞ୍ଜେ ଲାଗେ ଡାଳର ଲାଲେଲାଲ୍, ରଣିଫୁଲିଆ ଜହ୍ନରେ କୁଆଁରୀଙ୍କ ପୁଚିଖେଳ, ମେଳ ଆଉ ଥିଏଟରପାର୍ଟି, ରଜର ଦୋଳି ଆଉ କଇଁଫୁଲଭିତ୍ରା ପୋଖରୀ ତୁଠରେ ଅନାବନା ବଣଫୁଲ ପିନ୍ଧା ବାଲୁଙ୍କା ଠାକୁର, ତାଳଗଛଭିତ୍ରା କୁଆମଇତା, ଗୁଳଭିତ୍ରା କଖାରୁ ଫୁଲ । ମତେ ଭଲ ଲାଗେ ଗାଁର ଗପୁଡ଼ା ବୁଢ଼ା କି ଗପୁଡ଼ୀ ବୁଢ଼ୀ ଯେତେବେଳେ କାହାଣୀ ପେଡ଼ି ଖୋଲନ୍ତି, ଅସୁରଅସୁରୁଣୀ ଆଉ ଭୂତପ୍ରେତ ରୂପ ଦେଖାଇବା ବାହାନାରେ ଯେତେବେଳେ କେତେ ଭେଙ୍ଗିଚିରେ ମୁହଁ କରନ୍ତି, ଗୁଳିଲା ଶଗଡ଼ରେ ହାତ ଲଗଉଥିବା ବାଳୁଙ୍ଗା ଟୋକାମାନେ ଆଁ କରି ଏକ ଲୟରେ ଯେତେବେଳେ ଗପ ଶୁଣୁଥାନ୍ତି ।

Digitized by srujanika@gmail.com

ମତେ ଭଲ ଲାଗେ ସ୍ନେହସମ୍ପର୍କଭରା ଗାଁଟିର ଚେହେରା—ଅଜା ଆଈ, କକେଇ ଖୁଡ଼ୀ, ମଉସାମାଉସୀ, ସଙ୍ଗାତମଇତ୍ର, ଗଜାମୁଗ, କଣିକାକୁଣ୍ଡ, ବଉଳ, ମକର, ଓଁଶକା କଡ଼ି, ଗଙ୍ଗାବାଲି, ଯମୁନାପାଣି ଡକାଡକ; ଯେତେବେଳେ ଗାଁଟା ଘର ପରି ଲାଗେ, ଗୋଟିଏ ଛନ୍ଦରେ ଦୋଳେ, ଖେଳେ, ହସେ ବା କାନ୍ଦେ । ରକ୍ତ ସମ୍ପର୍କ ନ ଥିଲେ ବି ଏକା ରସରେ ସଂପୃକ୍ତ ଥିଲେ ସମସ୍ତେ । କାହାର ପିଲା ହେଲେ ସାଇ ମାଇପେ ଧାଇଁ ଆସୁଥିଲେ—

'କଣ୍ଠେ ନନ୍ଦସୁତ ହେବା ଶୁଣିଲେ
କଳାକରମୁଖୀ ଗୋପୀ ଧାଇଁଲେ ।'

ଆଃ, କି ଖୁସି !

ରୋଗ ଶୋକରେ ସେହିପରି ପହଞ୍ଚିଯାଇ ଲୋକେ କେତେ ବୁଦ୍ଧି, ବଳ, ସାହସ ଦେଉଥିଲେ । ଅକାଳେ ଅବେଳେ ଆସି ଠିଆ ହବା, ଭରସା ଦବା ତ ଗୋଟିଏ ବଡ଼ କଥା । ଯୁଆ ବନ୍ଧୁବେଶର ସେ ଚଳାଇ ନେଉଥିଲା । ନମିତ୍ୟ, ଯାତ୍ରାଳ, ଭାଗବତବଡ଼ା, ମଉଚ୍ଛ ଗାଁ ଲୋକେ ମିଳି-ମିଶି କରୁଥିଲେ । ମତେ ଭଲ ଲାଗେ, ଯେତେବେଳେ ଗାଁଲୋକେ ଏକାଠି ବସି ଗୃହବାସ କଥା ପକାନ୍ତି, ପୁରାଣ ଶୁଣନ୍ତି, ଗାଁକଳ ଗାଁରେ ମେଣ୍ଟାନ୍ତି, ସାଇମାଇପେ ହୁଳହୁଳି ପକେଇ ପନ୍ତେଇ ପୂଜା କରନ୍ତି ।

ଫୁଲଫଳରେ ଗାଁ ହସି ଉଠୁଥିଲା । କାହା ଫସଲ ଉପରେ କେହି ଡାହାଣୀ ଆଖି ପକଉ ନ ଥିଲା । ଶାଗ ଖାଆନ୍ତୁ ବା ପେଜ ପିଅନ୍ତୁ, ଲୋକଙ୍କ ମନରେ ସନ୍ତୋଷ ହସ ଲାଗି ରହିଥିଲା ।

ଆଗରୁ ରାଗରୋଷରେ କୁଟାକୁଟି ହୋଇଥିଲେ ବି ନମିତ୍ୟପର୍ବରେ କୁଣ୍ଢାକୁଣ୍ଢି ହୋଇ ଯାଉଥିଲେ । କୋଉ କଥାକୁ କେହି ଧରି ବସୁ ନ ଥିଲେ । ମିଳାମିଶା ଭାବ ସବୁବେଳେ, କଥା ଦେଲେ ଲୋକେ କଥା ରଖୁଥିଲେ, ଉଧାର ନେଲେ ଶୁଝୁଥିଲେ; 'ଅଧେ ଆପଣା ଅଧେ ପର' ହୋଇ ଚଳୁ-ଥିଲେ । ଲୁଖୁରା, ଝାମ୍ପୁରମୁଣ୍ଡା, ଧୂଳଧୂସରିଆ, ଅଧାଲଙ୍ଗଳା, ଖଙ୍କା ପେଟ ପିଠିରେ ଲାଗିଥିବା ଲୋକଙ୍କ ମୁହଁର ମିଠା ହସ ଥରେ ଦେଖିଲେ କେହି ଭୁଲି ନ ପାରେ ।

Digitized by srujanika@gmail.com

ଦାରିଦ୍ର୍ୟ ସହିତ ବୃଦ୍ଧାମଣା ହେବା ଫଳରେ ଦୁଃଖ ଦେହସୁହା ହୋଇ ଯାଇଥିଲା । ଦୁଃଖ ମାନେ ଧନ୍ଦା । ଧନ୍ଦା କଲେ ଚଳିବ; ଏଥିରେ ଦୁଃଖ କଣ ? ମିଛକୁ ବାଡ଼େଇ କଚ୍ଚଡ଼ ହେଇ ଲାଭ ବା କଣ ?

'ହାଣ୍ଡିରୁ ଆସେ; ହାଣ୍ଡିରେ ପଶେ'—ଏଇ ହେଲା ମୋଟାମୋଟି ଗାଁ ଜୀବନ । ଏତେ ଦୁଃଖୀ ହୋଇ ଏତେ ସୁଖୀ ଏ ଯୁଗରେ ତ କାହାକୁ ଦେଖୁନାହିଁ ।

ଘରଆଡ଼ୁ ଗୀତ ଭାସି ଆସୁଥିଲା—

'ପୁଅ ହେଇଥିବ ରାଜକୁମାର ଲୋ
ପୋଥି ଧରି ଗୀତ ଗାଇବ
ହାତରେ ଲଗାଇବ ସୁନା ଝଲ୍ଲି ଗଛ
ନଗି ଧରି ଫୁଲ ତୋଳିବ ।'

'ତୁଳସୀ ମୂଳେ ଦେଲି ଜାଗର
ତୁଳସୀ ବୋଇଲେ ମା'ଗେ ବର
ହାତକୁ ସୁନା ଲୋ ପେଡ଼ିକ ବନା
ବାର ବରଷର ଧାନ ପୁରୁଣା ।
କାଖେ ପୁଅ ଲୋ ପଣତେ ଝିଅ
ଜୀଇଁଥିବା ଯାକେ ଅହିଅ ହୁଅ ।'

Digitized by srujanika@gmail.com

## ।। ଧୁଉ ।।

'ରୂପ ନୀଳବର୍ଣ୍ଣ
ଭାଉ କସ ?'
'ରାବଣ ମନ୍ଦୋଦରୀ ମିଶା' ।
'ହନୁମନ୍ତ ପିତା ମୁଖେ ଦେ'
'ଦଶ ପଇସାରେ ନେ ।'

'ହଲଧର ପତ୍ନୀରଇ ଜଳଧରଙ୍କୁ
ଚନ୍ଦ୍ରଧର କମ୍ପା ମଲେ ?'
'ସ୍ୱର୍ଗରୁ ପଡ଼ିଲେ ପଞ୍ଚପାଣ୍ଡବେ
ମାରି ବନବାସ ଗଲେ ।'

ମୋ ନାଆଁ ମିଛୁ; ନାଆଁ ଦିଆ ହେଲା ବେଳେ କାହା ତୁଣ୍ଡ ଫିଟିଥାଏ ? କାହା ମୁଣ୍ଡ କାମ କରେ ? ଫଳରେ ବହୁତ ଖରାପ ନାଆଁ ଦିଆ ହୁଏ; ହେତୁ ହେଲା ପରେ ଲାଜ ମାଡ଼େ । ହେଲେ ମିଛ କହେ ବୋଲି ମୋତେ ମିଛୁ ନାମ ଦିଆ ହୋଇନାହିଁ । ଯେହେତୁ ତୁଣ୍ଡ ଫିଟିବା ଆଗରୁ ଏ ନାଆଁ ।

ମୋ ବଡ଼ ଭଉଣୀ ମରିଥିଲା । ମୁଁ ଅପଣିଆ । ଯମକୁ ଭୁଲେଇବା ଲାଗି ବୋଉ ଏ ନାଆଁ ଦେଇଥିଲା । ମିଛୁଆ ଅଛୁଆଁ । ଧର୍ମଦେବତା ଯମ, ଏ ଛୁଟର ଜୀବନଟା ନବା ଲାଗି କଣ ଛୁଆଁ ହବାକୁ ଯିବେ ?

କେତେ ନାଆଁରେ ମଣି ଲାଗେ; ଯେମିତି ରଘୁମଣି, ଫଗୁମଣି; ସେମିତି ମିଛୁ ସଙ୍ଗେ ମଣି ଲାଗିଲା ।

ଯେମିତି ଯାତରେ ନାରଦ ବାହାରିଲେ କହନ୍ତି—'ଆମ୍ଭେ ବ୍ରହ୍ମମୁନି ଅଇଲୁ'; ଦୁଆରୀ ବାହାରିଲେ କହେ—'ଆମ୍ଭେ ରଙ୍ଗିଆ

Digitized by srujanika@gmail.com

ଦୁଆରୀ ବାହାରିଲୁ ହୋ’ । ଯେମିତି ମୁଁ ଚିହ୍ନା ଦଉଚି । ମୁଁ ଠାକୁରଙ୍କ ସ୍ୱର ନଯେ ଚିହ୍ନା ନ ଦେଲେ ମୋତେ ଲୋକେ ଚିହ୍ନିନେବେ ?

‘ଆପେ ବଞ୍ଚିଲେ ବାପର ନାଆଁ’—ଯେ ହେଲେ ପଗ୍ଭରିବ—କାହା ପୁଅ ?

ମୋ ବାପା ଫଗୁମଣି—ବଡ଼ ଭାଇ ରଘୁମଣି; ମୃତ । ବାପା ଥିଲେ ସାଧୁ ପ୍ରକୃତିର । କଷ୍ଟେମଷ୍ଟେ ଦସ୍ତକତଟିଏ କରୁଥିଲେ ସେ । କିନ୍ତୁ ପିଲଙ୍କୁ ପାଠ ପଢ଼ାଇ ହାକମ୍ କରିବା ତାଙ୍କର ଲକ୍ଷ୍ୟ ଥିଲ । ବନ୍ଦୋବସ୍ତ କ୍ୟାମ୍ପ୍‌ରେ ସେ ଡେପୁଟୀ, କାନଗୋଇ ଦେଖିଥିଲେ, ଜଗନ୍ନାଥ ଦର୍ଶନକୁ ପୁରସ୍ତମ ଯାଇ କେତେ ହାକମ, ବାବୁଭୟା ଦେଖି ଆସିଥିଲେ । ଆଡ଼ମ୍ବର, ହୁକୁମ୍‌ଜାରୀ ତାଙ୍କ ଆଖିକୁ ବଡ଼ ବଡ଼ କରିଥିଲ—‘ଏ ଯୁଗରେ ହୁକୁମ୍ ଚଳେ, ହାକମ୍‌ରୁ ବଡ଼ କେହି ନାହିଁ ।’ ହାକମର ବାପ ହବା କେଡ଼େ ପଉରୁଷ ! ହେଲେ ତାଙ୍କ ଭାବନା ଭାବନାରେ ହିଁ ରହିଗଲ । କଥା ଅଛି—

‘ଯାହା ଦେଇନାହିଁ କପାଳ  
ତାହା ଦେବେନାହିଁ ଗୋପାଳ ।’

ମାଇନର ପରେ ପେଟରେ ପିଳେହି ଯେନ ପେଡ଼ପୋଟଳା ବାନ୍ଧି ଫେରିଲି । ଜମାତକ ମୋ ପିଠିରେ ଗଲି; ଯାହା ରହିଲ ଜମି । ସେ ଲାଗି ବାପାଙ୍କ ମନରେ କଷ୍ଟ ନାହିଁ—ତାଙ୍କ ବିଶ୍ୱାସ—ଯେତେ ଅଙ୍ଗରେଜୀ ପଢ଼ିଚି, ସେଥିରେ ହାକମ୍ ଦେଖି ଗୁନିଆଁ ହୋଇ ଯିବ ନାହିଁ, ବେଳ ପଡ଼ିଲେ ତା’ ସାଙ୍ଗେ ମୁଣ୍ଡ ପକେଇ ଦବ ।

ସାନ ଭାଇ ଏକ ପଟା ବଳଦ, ମାଇନର ଅଧାରୁ ଫେରିଲି । ସେ ଗୃହବାସରେ ପାରଙ୍ଗମ, ହଳପାଳରୁ ପାଣିବୁହା, ବଳଦଗ୍ଡ଼, ଶଗଡ଼ ଚଲି ସବୁଥିକ ପାରେ । ମୁଁ ଘାସକୁ ଲମ୍ବ, ପାଳକୁ ଶ୍ରେଷ୍ଠ । କେବଳ ଲୋକ ନ ଅଇଲ ଦିନ କର୍ଣ୍ଣିରେ ହାତ ପକାଏ; ମୋର ପିଲ-କୁଟୁମ୍ବ ବଢ଼ିବା ଦେଖି ସାନଭାଇ ଭିନେ ହେଲ । ସେତେବେଳକୁ ବାପା ମାଆ ଆଖି ବୁଜିଥିଲେ ।

Digitized by srujanika@gmail.com

ମୁଁ ସାନଠୁଁ ଟିକିଏ ନପାରିଲି । ତଥାପି କାଙ୍କରେ ମୃଦଙ୍ଗ ଚଢ଼ିଲାକ୍ଷଣି ବଜାଇ ଶିଖିଲି । ଯୋଉ ଚେନାକ ବାଡ଼ି ମୋ ଭାଗରେ ପଡ଼ିଲା, ସେଥିରେ ଶାଗ, ପନିପରିବା କଲି । ଆଉ ହାଟବାଟକୁ ଯିବାକୁ ପଡ଼ିଲା ନାହିଁ ।

ମୋ ଜୀବନ ତ ଖଡ଼ା ବଡ଼ ଥୋଡ଼ । ପଡ଼ୋଶୀଙ୍କି ଘେନି ଆମେ ଘରଦୁଆର କରୁ । ସାନଭାଇ ନ ଥିଲେ ଏକୁଟିଆ କିଏ ଚଳି ପାରିବ ? ବିପଦକୁ ଭରସା; ସମ୍ପଦର ବି ରକ୍ଷାକର୍ତ୍ତା । ନଆଁ ପାଣିକି ସାହା; ସାଇପଡ଼ିଶା ଥିଲେ ଗାଁ ମଣିଷ ହୋଇଯାଏ ଚଉବାହା ।

ମୋ ପଡ଼ୋଶୀ ସନିଦାଦି, ଦାଦି ବୋଲି ଡାକିଲେ ବି ତା ପ୍ରତି ମନରେ ମୋର ପ୍ରକୃତ ଶ୍ରଦ୍ଧା ନ ଥାଏ । ମୁଁ ଜମିମାଲିକ; ସେ ମୂଲିଆ-ଟାଏ । ତା ମନରେ ବି ଗଉଁ । ସମସ୍ତଙ୍କର ଲାଗେ । କେବଳ ଆମ କାମକୁ ଆସେନାହିଁ । କାମରେ ଟିକିଏ ଖଇଚ୍ ହେଲେ ପୁତୁରା ହୁଡ଼ି କରି ଯଦି ପଦେ କହିଦିଏ ? ଦାଦି ମାନ୍ୟ ତାହେଲେ ରହିବ ନାହିଁ । ସନିଦାଦି ଓପାସେ ରହେ ପଛେ ମୋ କାମକୁ ଆସେନାଇଁ ।

ତା ମାଆ ରାଧୀ—ରାଣ୍ଡି; ନିପଟ୍ଟ କଳା । ଘରେ ପଶିଗଲେ କଟିକଟି ଅନ୍ଧାର ଘୋଟିଗଲା ପରି ଲାଗେ । ମୁଣ୍ଡ ବାଳ ଝୋଟ ହେଲା ପରେ ସେ ଆହୁରି କଳା ଦିଶିଲା । ଗେରସ୍ତ ମଲାପରେ ରାଧୀ ଧାନକୁଟୁ-ଣୀ ହେଲା, ଗୋଡ଼ରୁ ବାକୁଲି ବାହାରିଲା ଦିନୁଁ ସେ ଧାନକୁଟା ଛାଡ଼ିଛି । ଏବେ ସ୍ତ୍ରୀ ତା ଘରେ ଧାନ ଉସେଇ ଦିଏ, ରଗଡ଼ାରଗଡ଼ି, ଚୂଲିଚୂଲି, ବଟାବଟି, କଟାକଟି, ଓଳାଓଳି ଆଦି ଆଉଟପନ୍ତ କରି ଚଳେ । ସନିଆଁ, ଧନିଆଁ ଦି ପୁଅଙ୍କୁ ପେଜପାଣି ଦେଇ ବଢ଼ାଏ । ଦିନେ ଶୋଥ ବେମାରିରେ ଗାଈଜଗା ଟୋକା ଧନିଆଁ ମଲା । ମୁଣ୍ଡକୁ ହାତ ପାଇଲାରୁ ସନିଆଁ ସାଆନ୍ତ ଘରେ ଲେଙ୍କ ଲାଗିଲା, ଛ' ମାସିଆ । ବାକି ଦିନମାନ ଦାଣ୍ଡକାମକୁ ଯାଏ, ଭାଇଆଙ୍କ ଘର ଛଡ଼ା । କାରଣ ସେଥିରେ ଜାତି ଯାଏ, ପେଟ ପୂରେନା । ଯୋଉ ଭାଇଙ୍କ ସାଙ୍ଗେ ସେ ନ୍ୟାୟପଞ୍ଚରେ ବସେ, ସେମାନଙ୍କ ଆଖିରେ ସେ ଶ୍ରେଷ୍ଠ ହେଇଯିବାକୁ ଚାହେଁ ନାହିଁ । ଭାଗ୍ୟ ମୂଲିଆ ମୁଣ୍ଡ କଲେ ବି ସେ ବୁଝେ—

Digitized by srujanika@gmail.com

'ଆଲେ ସଖୀ
ଆପଣା ମହତ ଆପେ ରଖି ।'

ସନଆଁ ଭାରି କଡ଼କା । ହଳପାଳ, ଶଗଡ଼ଚଲା, କାହିଁକି ସେ ହଦାଏ ନାହିଁ; ଧାନକଟା, ବଳବଗ୍ଡୁ, ବାଡ଼ କାମୁଡ଼ାଦଆ, ଘର ଛପର, କାଣ୍ଡଦଆ, କୋଡ଼ହଣା, ସବୁ କାମକୁ ସେ ଗଦ୍ଧ ପରି ମାଡ଼ିବସେ । ଭାରି ନମକ୍‌ହଟା; ଖାଏ ଯାହାର, ଗାଏ ତାହାର । 'ଖାଇବ କୁରୁବଳଙ୍କର, ଗାଇବ ପାଣ୍ଡବଙ୍କର' ଏ କଥା ତା ଦେହ ହୁଏନାହିଁ ।

ବଳଦ ପଛକୁ ଆଡ଼େଇ ମହଣ୍ଡା ମୁହଁରେ ଯେତେବେଳେ ବସିଯାଏ, ସେତେବେଳେ ବଳଦ ବୁଝନ୍ତୁ—ଏ କଏ । ଏଠି ମଠଆଗିରି ଚଳବ ନାଇଁ । ପିଠିରେ ପାଞ୍ଚଣ ବାଡ଼ ଉଡ଼ିପିବ । ବଳଦ ଦଉଡ଼ନ୍ତୁ, ଧୋଡ଼ ପକାନ୍ତୁ, ସନଆଁ ପାଞ୍ଚଣ ଥୋମଣିରେ ମାରି ନ ଅଟକେଇବା ପର୍ଯ୍ୟନ୍ତ ।

କଣ୍ଠି ଧଇଲେ କାଖ ବାଟେ ପବନ ବାହାରିଯାଇ ପାରେନାହିଁ । ଏଡ଼େ ଗହିରିଆ କରି ହଳ କରେ ଯେ ଓଡ଼ଗୃଷ ଦୋଅଡ଼ ପରି ଦିଶେ । ନପାରିଲା ଲୋକ ରୁଲ୍‌ ଗାରି ଟାଣେ । ପଗ୍ଚରିଲେ ଜବାବ୍‌ ଦିଏ—'ହଳ ଠିକ ଯାଇଚ, ଲୁହାଟା ମୁଣ୍ଡା ! ଗୋଡ଼ଙ୍ଗା ଲଙ୍ଗଳ ଶୁଖିଲା ମାଟିରେ ଡେଇଁ ଡେଇଁ ଯାଉଚ ।

ପାରିଲା ପୁଅ ଈଶର ବଡ଼ ହେଲା ପରେ ବାପଠୁଁ ଭିନେ ହେଇଚ । ସନଆଁ ଏବେ ବୁଢ଼ା । ଓଳିଏ ଖାଇଲେ ଓଳିଏ ଉପାସ । ଖଣ୍ଡେ ବୋଲି ଗାମୁଛା; ଗାଧେଇଲେ ଦିହରେ ଶୁଖେ । ବୁଢ଼ା ଦିନେ ଏଡ଼େ ସଚୋଟ ଲୋକର ଏ ହୀନଅବସ୍ଥା । ଯୋଉ ସାଆନ୍ତ ଘରେ ଖଟି-ଖଟି ବଳବୟସ ଝଡ଼ାଇଥିଲା, ତାଙ୍କୁ ଦୁଃଖ ଶୁଣେଇବାକୁ ଡର ମାଡ଼େ—କାଳେ ମନା କରିଦେବେ !

କାହା ଦୁଆରେ ହାତ ପତେଇବାକୁ ଲାଜ ମାଡ଼େ···ଲଗିଲା ଲୋକ କଣ ମାଗି ଖାଇପାରେ ? ତା ଅପେକ୍ଷା ପଡ଼ି ପଡ଼ି ମରିଯିବା କୋଟିଗଣେ ଭଲ ।

Digitized by srujanika@gmail.com

ଦିନେ ପଚାରିଲି—ସନଦାଦି, କେମିତି ଅଛ ? ଯେମିତି ବୁଢ଼ା ଦିନେ ମୂଳଆମୁଣ୍ଡ ରହିବା କଥା । ମାଆ ଲକ୍ଷ୍ମୀ ଜଗନ୍ନାଥଙ୍କ କୁଆଡ଼େ ସମସ୍ତଙ୍କୁ ପଡ଼ି ଦିଅନ୍ତି ! ମୋ ବେଳକୁ ଅଡ଼େଇ ପହରକୁ ମିଳେ ଡ଼ୋକେ ତୋରାଣି । ସେ ମୋ ଭାଗ୍ୟଦୋଷ ।

ଭଗବାନ୍ କାହାକୁ ଛପର ଫାଡ଼ି ଦଉଥିବେ । ମୋ ଛପରଟା ତ ସବୁବେଳେ ମେଲା; କେବେ କଣ୍ଟା କୁଡ଼ଆରେ ପଡ଼ିବାର ତ ଦେଖା ନାହିଁ !'

ସନିଆଁ ପାଖକୁ ବଇଁଶିଆ ମା ଘର; ସେ ବି ବାଣ୍ଡ, ଧାନକୁଟୁ-ଭୁଣୀ । ବି ପୁଅ ପାରିଲା ପରେ ଏବେ ବଇଁଶିଆ ମାଆ ଗୋଡ଼କୁ ବୁଲେଇ ପକଉଚି । ତାର ଏ ଢଙ୍ଗ ଦେଖି ହଗୁରିବୋଉ ଡଗ ମେଲିଲା—

'ଲୁଗ୍ଗାକୁ ଏତେ
ମୁଦି ନାଇଁ ଗୋଡ଼ କରୁଡ଼ୁ କେତେ !'
ଗୋଡ଼ରେ ଯେମନ୍ତ ମୁଦି......

ପାସୋରି ଅପା ତାକୁ ତୁନି କରି କହିଲା—

'ଆଗର କହେଇ କି ?
କହେଇ କାନ୍ଧରେ ଲାଲ୍ ଗାମୁଛା
କହେଇ ମଣିଷ ଚହେଇ କି ?'

ବଇଁଶିଆ ମା କଥା କହନାଇଁ, ତା ଭାଗ୍ୟ ଏବେ ଜଳୁଚି । ଗଜା ଦାମୁଡ଼ି ପରି ଦିଟା ବୋହୂ, ଧାଇଁ ଧାଇଁ ସବୁ କାମ କରି ଦଉଛନ୍ତି । ସେ ଗୋଡ଼ ଲମ୍ବେଇ ବସୁଚି, ମୋଢ଼ା ଖାଉଚି; ନଇଲେ ଅଳସ ଗଡ଼ରେ ଜାଲ କରି କି ଶାଗ ତୋଳି ଯାଉଚି । ଏଠିସେଠି ଗପ ଜମେଇବାର ଏ ଗୋଟାଏ ଫନ୍ଦି । ତାକୁ କିଏ ତରବର କଲେ କହେ—କାହିଁକି ? ମୋ ଗୁଡ଼ଘର କଣ ପିମ୍ପୁଡ଼ି ଖାଇଯାଉଛନ୍ତି କି ?

ଅଗଣାରେ ପିଜୁଳି ଗଛଟାଏ । ପାଚିଲା ପିଜୁଳି ଜଗି ସେ ରାତି-ସାରା ପିଣ୍ଡାରେ ଶୁଏ; ଘୁଇଁନିଦ ଲାଗେ କି ନ ଲାଗେ; ବାଦୁଡ଼ି ଡେଣା

Digitized by srujanika@gmail.com

ଫାଙ୍ଗ ଫାଙ୍ଗ କଲେ ସେ ଟଙ୍କରେ ଡେଉ ଗିନବନ୍ଧା ନଗିଟାକୁ ଟିକେ ହଲାଇ ଦିଏ ।

ଦିନେ ନଡ଼ୁଆ କଡ଼ାଏ ଧରି ତା କଡକ ପାଚିଲା ପିଜୁଳି ଖାଇଗଲା । ବଇଁଶିଆ ମାଆ ଘାକୁଆ ପାଟିକି ଲମ୍ବାଇଦେଇ କହିଲା—ଏ କଥାତ କଥା କହୁଚ ବା ? ନଡ଼ୁଆ କଣିଟାକୁ ପାଚିଲା ପିଜୁଳିଟାଏ !

ଏ କଥା ବୋଉକୁ କହିଲାରୁ ସେ କହିଲା—ବଇଁଶିଆ ମା କୋଉଦିନ ଏଡ଼େ ଘରଣୀ ହେଇଗଲା ବା ? ମୋ ଝିଅ ଶୁଖିଲା ନଡ଼ୁଆଟା ହେଲା କଣି ! ତା ବାଦୁଡ଼ି ନଖମରା ପିଜୁଳିଟା ତାକୁ ଏଡ଼େ ଦିଶିଲା ?

ତା ପାଖକୁ କୁନିଆ ଜେନାର ଘର; ମାଈ ନୁହେଁ କ ଗାଈ ନୁହେଁ; ଗୃହଲେ ଅଷ୍ଟାବକ୍ର ଋଷି; କଥା କହିଲେ ଅଣ୍ଡିରି ମୁହଁରୁ ମାଇପୀ ସ୍ୱର ବାହାରେ । ଏଟା ଅଣ୍ଡିରିମାଇପୀର ଗୋଟେ ଗୋଳାପୋଳା ସୃଷ୍ଟି, ଦଇବର ବିଚିତ୍ର ଲୀଳା ।

ଏଇ ବିକଳାଙ୍ଗଟି ମାଆର ଆଖିଡୋଳା । ଷଠି ଦୁଛୀ ଦେଇଛୁ, କଣ ଫୋପାଡ଼ି ଦବ ? ଯେତେ ହେଲେ ପୁଅର ମା ତ ! ପର ଦୁଆରେ ଗୋହିରି ଗୋଟେଇ ସେ ପୋଷେ । ସେଥିଲାଗି ତା ମନରେ ଦୁଃଖକଷ୍ଟ ନାଇଁ; ଦିନକ ଜରରେ ଯେତେବେଳେ କୁନିଆଁ ମରି ଶୋଇଲା, ସେତେବେଳେ କୁନିଆଁ ମା'ର ଶୋକ ସନ୍ତାପ ଦେଖିବ କଣ ?

ତା ପାଖକୁ କାଲି ଗୁଡ଼ିଆ । ଅସଲ ନାଆଁଟି କଣ ଥିଲା ? ଦୁଆର ମୁହଁରେ ଶୁଖିଲା ମେଘରୁ ଗୋଟେ ଚଡ଼କ ପଡ଼ିଲା, ଆଚମ୍ବିତ କଥା, ଗୁଡ଼ିଆ ଟୋକା ସେଥିରେ ଅଚେତା ହୋଇଗଲା । ଚେତା ହେଲା ପରେ ତା କାନକୁ ଆଉ ଶୁଭିଲା ନାହିଁ । ଠାରଠାରରେ ଏବେ କଥାଭାଷା ଗୃହଲେ । ଅଧା ଗୁଡ଼ିଆ, ଅଧା ମୂଲିଆ ସେ । ଦିନେ ହଳ କଲାବେଳେ ବାଟୋଇ ବାଟ ପଚାରିଲା; କାଲି ଭାବିଲା—ବୋଧେ ବଳଦ କଥା ପଚାରୁଛି—ସେ କହିଲା—ଏଟି ମୋ ବଳଦ, ସେଟି ଶଶୁରଘର ବଳଦ !

ଏ କଥା କେତେ ସତ, କେତେ ମିଛ କିଏ ଜାଣେ ? ହସ କଥା କିଛି ମନକୁ ନ ଆସିଲେ ଲୋକେ କାଲିକୁ ଏଇ ପ୍ରକାରେ ଟାପରା କରିଥାନ୍ତି ।

Digitized by srujanika@gmail.com

ଗୁଡ଼ିଆ ପିଲ୍; ସେ ଦୋକାନକୁ ପସରା ନେଇ ଯାଏ—ଘୃତଖଇ, ଚୁଡ଼ାପୁଆ, ଦୋଫାଗୀ ଉଖୁଡ଼ା, ମଳ କୋରା, ଖଜା, ଶାକର, ମିଠେଇ, ଜଲ୍‌ବି···, ଗାଁରେ ଏକମାତ୍ର ସେଇ ସାତପ୍ରକାର ପୁର ଦେଇ 'ସାତପୁରୀ' କରେ। ସାତପୁରୀ ଅମାବାସ୍ୟା ଦିନ ମୁଁ କିଣି ଆଣେ।

ତାପରେ ନଡ଼ିଆ, ବାଉଁଶ, କସ୍ପାଁ ଗଛର ଗୋଟାଏ ଗେରଦ; ସେଥିରେ ବାବାଜୀ ରଘୁ ଦାସଙ୍କ ଘର। ଗୋରା ଟକ୍‌ଟକ୍ ମୋଟାମୋଟି, ମହାନ୍ତ ପରି ଚେହେରା; ଆଖି ବୁଜି ପଦ୍ମାସନରେ ବସିଗଲେ ଚେଲା ଜୁଟି-ଯାନ୍ତେ। ତା ନ କରି ଆଖି ଖୋଲି ବାବାଜୀ ଗୋଟେ ଦୋକାନ କଲେ। ଲୋକଙ୍କ ଗୃହସ୍ଥଦାକୁ ଗୃହସ୍ଥି ସବୁ ସଉଦା ସେଠି ମିଳେ। ସଞ୍ଜ ଲାଗିଲା ବେଳକୁ ଲୋକେ ଜମନ୍ତି, ଗପ ଜମାନ୍ତି, ସଉଦା ନେଇ ଫେରନ୍ତି।

ଚେହେରାକୁ ଗୃହସ୍ଥିଦେଲେ ବିଶ୍ୱାସ ଆସେ—ଏ କେବେ ଠକୁ ନ ଥିବ! ବାବାଜୀ ତାଙ୍କର ଦେଖିଲା କାମ କରନ୍ତି। ବେପାରୀ ଠକିଲେ କିଣ ଦୋଷ?

ବାବାଜୀ ଅଳ୍ପ କାଳ ମଧ୍ୟରେ ଖୁବ୍ ଠେକିଲ୍, କିନ୍ତୁ ବୁଦ୍ଧି ବିପରୀତ; ସେ ଯାତମେଳରେ ମାତିଗଲ୍। ଦୋକାନ ପ୍ରତି ଆଉ ନଘା ରହିଲ୍ ନାହିଁ। ଗୁଣ୍ଡି ଥିଲେ ଗୁଆ ନାହିଁ; ତେଲ ଥିଲେ ଲୁଣ ନାହିଁ। ଲୋକେ ଚିଡ଼ିଗଲେ—କେତେଟା ଜିନିଷ ପାଇଁ କିଣି ତିନି ଦୋକାନ ବୁଲିବେ?

ରଘୁଦାସ ଯାତାରେ ରାତିଅନିଦ୍ରା ହୋଇ ବେମାର୍ ହେଲେ। ଏଡ଼େ ବଡ ସୂତାଖିଅରେ ଆସି ରହିଲା। ଦୋକାନ ଭାଙ୍ଗି ପଡ଼ୁଥିବାବେଳେ ସମ୍ଭାଳି ନେଲା ଭାଇ ଜଗା, ଚଲାକ୍ଷ ଚତୁର।

ବଣିଆ ନ ହେଲେ ଦୋକାନ ନ ଚଳେ। ସାନଭାଇ ପବନା ଦୋକାନରେ ବସିଲା, ଜଗା ଜିନିଷପତ୍ର ଯୋଗାଇଲା। ମୋଟା ଦରରେ ମାରୱାଡ଼ିଠାରୁ ସଉଦା ଆସେ, କାଳିବାସିରେ। ଖୁଚୁରା ବିକାରେ ଧାନ ମୁଗ, ବିରି ଆଦି ମିଳିଲେ ଚତୁର୍ଗୁଣ ଲାଭ। ପାଞ୍ଚଶ ତିନିଶ ଗଣିବାର

Digitized by srujanika@gmail.com

ଶଙ୍କ ଜଗାର ଆସିଲା । ଛାତି ଫୁଲିଲା, ମୁହଁ ଉପରକୁ ହେଲା । ଜମା ହେଲାପରେ ସେ ଜମା ପଡ଼ିଲା, ଜମିନରେ ଖସାଇଲା, ଗାଁର ବଡ଼ ମକଦ୍ଦମଙ୍କ ପାଖେ ବସି ମାମଲତ କଲା; କାହା ଗୋଟି କେମିତି ବାଗରେ କାଟିବାକୁ ହବ, ବାଟ ବତାଇଲା । ଭିଲଲେଖା କଲା । ଏ ମାମଲତରୁ ବ ହାତଚକ୍‌କଣ ହେଲା ।

ଜଗାକୁ ଲୋକେ ଭୟ କଲେ । କିଛି ଗୁପ୍ତ କଥା ପଡ଼ିଥିଲେ ସେ ଅଚିଲାଖଣି ଚୁପ୍ ହୋଇଗଲେ — କାଳେ କୋଉଠି ଲଗେଇ ଲୁଟେଇ କହ ଅନର୍ଥ ସୃଷ୍ଟି କରିବ ।

ସବୁ ଦିନ ସମାନ ଯାଏନାହିଁ—ଗ୍ରହ ମନ୍ଦ । ମାରୱାଡ଼ୀ ଜଣା ନାଆଁରେ ଗୋଟେ ଖେଳୁଆ ନାଲିସ୍ କଲା । ତା ଠାଉଟ୍ଟା ଫେଲ୍ ମାଇଲରୁ ମକଦ୍ଦମେ ଆଉ ପାଖରେ ପୂରେଇଲେ ନାହିଁ । ଘର ବୁଡ଼ିଗଲା ଲୋକଙ୍କୁ ଘୋଡ଼ାମୁହଁ । ପୁଅ ଭଲ ପବନା ଗୋଟେ ଅକାମ କରି ବସିଲା; ସେ ଗୋଟେ ଅନାଡ଼ିଆ ଜବାନ୍ ମାଇପୀକୁ ଦୋକାନରେ ପୁରେଇ ଗୁବ୍ ଦେଲା — ବୋଧେ ଏକାଧିକ ମାତାଜୀ ରଖିବା ମତଲବ୍‌ରେ !

ଗୁହ୍ମା ବାବାଜୀ ସେ, ଘରେ ସଦ୍ୟବିବାହିତା ସ୍ତ୍ରୀ । ତଥାପି ଏ ଲିପ୍‌ସା ! ଭଜନଭଜ ତାଙ୍କୁ କି ଦୋଷ ଦବ ବାବୁ ?

ହୋ — ହଲ୍ଲା । ଭଲ ଲୋକ ବସି ଦୋକାନ ଖୋଲେଇଲେ । ପବନା ଗୋଡ଼ ତଳେ ପଡ଼ି ଠାକୁରଙ୍କୁ ଶହେ ଟଙ୍କା ଜରିମାନା ଦେଇ ପୁଲିସ୍ ଦାଉରୁ ରକ୍ଷା ପାଇଲା । ହେଲେ ଲୋକଲଜ୍ଜାରୁ ମୁଣ୍ଡ ଟେକି ପାରିଲା ନାହିଁ । ଲୋକଙ୍କ ଛି-ଛି, ସ୍ତ୍ରୀର ଝିଙ୍ଘାସ ବଚନ ପବନା ସହି ପାରିଲା ନାହିଁ । କି ବେମାରରେ ପଡ଼ି କତରାଲଗା ହେଲା । ଜଗା ପୁନର୍-ମୂଷିକ ହେଲା ।

ବାଙ୍ଗା ଢଙ୍ଗରେ ସବୁଠୁ ବଳୁଆ ଖମା । ଏକା ବଧାକେ ସେ ଛଡ଼ା ନଡ଼ିଆ ଭାଙ୍ଗି ଦିଏ । ସେ ମୁଦ୍‌ଗର ବୁଲାଏ, ଓଲଟା ଶୂନ୍ୟ ଢ ପକାଏ ।

Digitized by srujanika@gmail.com

ଭଲ ଚାଷୀ; ଘର ଉଦ୍ୟମୀ । ଚାଷରେ ସବୁବେଳେ ଆଗୁଆ । ଛୁଟୁକା ଔଷଧ ମଉଷଧ ବି କିଛି ଜାଣେ । ଯଦି ପସାରୁଣୀ-ପତ୍ର, ବିଶଲ୍ୟ-କରଣୀ, ବାସଙ୍ଗଫୁଲ କୋଉଠି ନ ପାଅ, ତା ବାଡ଼ିରେ ଖୋଜ । ପିଲାଙ୍କୁ ପିଠୁଳା ମାଇଲେ, ବଳଦଙ୍କୁ ଦାନା ନ ରୁଚିଲେ ସେ ଔଷଧ ଦିଏ; ଗାଈ ଦୁଧ ନ ଦେଲେ ସେ କାଠପାଣି କରେ । ସେ ମନ୍ତ୍ରର ଘା’ ଭଲ କରିଦିଏ । ଘା’ ମେଲିଦବା, ଗାଈ ଦୁଧ ଛଡ଼େଇବା, ଖାଇପେଷିବା ଅବିଦ୍ୟା ସେ ଜାଣି ଶୁଣି ଶିଖି ନାହିଁ । ତାକୁ କେତେ କମିଆଁ ଜଣା । ରାତିରେ ଭୂତ, ପ୍ରେତ, ବ୍ରହ୍ମରାକ୍ଷସ ଭେଟଣା ହେଲେ ଆଡ଼େଇ ଯାନ୍ତି ।

ଗୋଟେ ଦିରମଲ ଘୋଡ଼ାକୁ ପଠାଣ ଛାଡ଼ି ଯାଇଥିଲା—ପଡ଼ି ପଡ଼ି ମରୁ ! ଖମା ହେପାଜତ କରି ତାକୁ ଜୀବନ୍ୟାସ ଦେଲା ।

‘ଘୋଡ଼ା ଚଢ଼ାରୁ ସମ୍ପତ୍ତି ନାହିଁ ।’ କିନ୍ତୁ ତା ଗାମୁଚ୍ଛା ପିନ୍ଧାକୁ ଘୋଡ଼ା ଚଢ଼ା ମାନେ ନାହିଁ । ଜିନ୍, ଲଗାମ୍ କିଣିବାକୁ ବିଭବ ନାହିଁ । ଗୋଟେ ପଘା ଲଗାମ୍ କରି ସେ ଘୋଡ଼ାକୁ ଏ ଗାଁରୁ ସେ ଗାଁ ଝପ୍-ଟେଇଲା । ବଡ଼ ଭୋର୍‌ରୁ ଗାଁ ଚାରିପାଖେ ସାତଫେରି ବୁଲେ । ଛ’ ଟଙ୍କା ଘୋଡ଼ାକୁ ନ’ ଟଙ୍କାର ଦାନା । ଏ ହେଲା ଶେଷକୁ ଏକ ବିପଦ । ବଳଦକୁ ଦାନା ନଅଣ୍ଟ; ଘୋଡ଼ା ସମ୍ଭାଳିବ କାହୁଁ ?

ହସ କଥା ପଡ଼ିଲେ ହସେ, ନ ପଡ଼ିଲେ ବି ହସେ । ଏ କାଣ୍ଡିଆ ବା’ଙ୍କ କଥାକୁ କେହି ଟାହିଙ୍ଗରେ ପକାନ୍ତିନାହିଁ । ଦାନ୍ତନକୁଟା, ଚିଲମ ଚଟା ।

ସିନ୍ଧୁଆ ବା’ଙ୍କ ରଧୁଆର ପୁଅ; ତାକୁ ଥରେ ଗୋପିଆର ଭୂତ ଲାଗିଥିଲା । ସିନ୍ଧୁଆ କହିବୁଲିଲା—ମତେ କେମିତି ମାଇଲେ ଜାଣ ! ଶୋଇଥିଲା ବେଳେ ମୋ ମୁହଁରେ ଗାମୁଚ୍ଛାଟାଏ ଭିଡ଼ିଦେଇ ଅନ୍ଧାରିଆ ବାଡ଼ିଆଡ଼କୁ ଘୋଷାରି ନେଲେ । ବେକରେ ଶାବଳ ପକାଇ ମାରି-ଦେଲେ । ମୋ ନିଜ କକେଇ ଗୋଟେ ମଣିଷମାରୁ ଡାକି ଏ ଅକାମ କଲା । ମୁଁ ଧୋବଣୀ ଟୋକୀ ସାଙ୍ଗେ ଭାବ ଜମେଇଲିରୁ ସେ ବନ୍ଧୁ-କୁଟୁମ୍ବଙ୍କ ଆଗେ ମୁଣ୍ଡ ଟେକି ଚାଲି ପାରୁ ନ ଥିଲା । ମୁଁ ତାକୁ ଖାଇଲି । ଏବେ ତା ବଂଶ ଖାଇବି !

Digitized by srujanika@gmail.com

ଗୁଣିଆଁ ଆସି ପଦ ମେଲିଲା—ଗୁଡ଼, ଗୁଡ଼ ବୋଲି କାହାର ଆଜ୍ଞା ? ବାଶୁଳୀ ଠାକୁରାଣୀଙ୍କର କୋଟି କୋଟି ଆଜ୍ଞା, ତାପରେ ଗୋପି- ଆକୁ ମାଠିଆରେ ବନ୍ଦ କରି ପୋଖରୀ ହୁଡ଼ାରେ ପୋତି ଦେଲେ—ଆହା ବିଚରା ଗୋପୀ ମାଷ୍ଟ୍ରେ !

ଗରିବୀ ନାଶ ଯୋଜନାରେ ସରକାର ଦଶ ହଜାର ଟଙ୍କା ଦେଇଛନ୍ତି; ଗାଁରେ ତାହୁଁ ବଳି ବଳି ଗରିବ; ତା କପାଳ କେମିତି ଖୋଲିଗଲା ? ଆଗ ଜନମରେ ବୋଧେ ସତ୍‌କାର୍ଯ୍ୟରେ କିଛି ଦାନ କରି- ଥିଲା; ତା ଫଳ ଏବେ ମିଳିଲା ।

ସିନ୍ଧୁଆ ଏବେ ଏ ଟଙ୍କାକୁ ଖେଳଉଚି; ପଞ୍ଚାୟତ ପୋଖରୀ ନିଲାମ୍ ଧରିଚି । ବା'ଜୀ ମାଛ ବେଉସା କରେ ? ଗାନ୍ଧୀଙ୍କ ଚେଲା, ଯେ ଗଞ୍ଜେଇ ଅଫିମ ଦୋକାନ ଆଗରେ ସତ୍ୟାଗ୍ରହ କରୁଥିଲା, ସେ କେମିତି ମଦ ଦୋକାନ ଖୋଲିଚି ?

ହ, ବେଉସାରେ କଣ ଅଛି ? ପଦ୍ମପତ୍ରରେ ଜଳବିନ୍ଦୁ ପରି ଅଲଗା ରହିଲେ ହେଲା । ହେଲେ ରହିହୁଏ କୋଉଠି ? ଯେମିତି ରୂପବତୀ ଯୁବତୀ, ବ୍ରହ୍ମଚାରୀ—ଘୃତ ହୁତାଶନ ।

ଘାକୁଡ଼ି, ବେଣ୍ଟ ମରି ହେବା ଦେଖି ସତରେ ସିନ୍ଧୁଆର ପାଟି ଠକ ଠକ ହେଲା । ସବୁ ବା'ଜୀଙ୍କୁ ଏକାଠି କରି ସେ କହିଲା—ଦିନେ ଆମର ଏ ଘରେ ମଠ କି ଆଶ୍ରମ ଥିଲା, ଯୋଗୀ କି ଋଷି ଥିଲେ, ହୋମ କି ଯଜ୍ଞ ଧୂଆଁ ଉଠୁଥିଲା । କେବେ ମାତା ରଖ, ରଖ, ବା'ଜୀମାନେ ହେଲେ ଗୃହୀ ? ଘରକରୁ ଏବେ ଆମେ ଶହେଘର ! ସବୁ ତ କରୁଥାଇଁ, ମାଛ ନ ଖାଇବା କାହିଁକି ? ମନରେ ସେଇକଥା ଥିଲା, ମାଳାରେ ହରି- ନାମ ତ ଦୂରର କଥା, ବେକରେ ମାଳା ହିଁ ନଥିଲା । ଲୋକେ କଥାଟାକୁ ମାଡ଼ି ବସିଲେ ।

ବା'ଜୀଙ୍କ ଭଣ୍ଡହଟାର ପାଁ ଭାଗ ବଡ଼ ପୋଖରୀ ଭିତରକୁ, ଏଣେ ବା'ଜୀତକ ଦୂରରୁ ମାଠିଆ ଚଲ ବସିଲା ପରି ହସନ୍ତି । ହେ ଭଗବାନ୍,

Digitized by srujanika@gmail.com

ଏଇ ପ୍ରସ୍ତାବ ଯଦି ବେଶୀ ଦୂର ଆଗାଏ, ଭାରତବର୍ଷରେ ଚେଙ୍ଗତ ଦୂରର କଥା, ବେଙ୍ଗଟାଏ ବି ଦେଖିବାକୁ ମିଳିବ ନାହିଁ !!

ହେଇ ସଦେଇ ମାହାନ୍ତି—ନିଜ ଘରକୁ 'ଭିକ୍ଷାକୁଟୀର' କରିଚି । ସେ କୁମ୍ଭୀପାଟିଆ ନୁହେଁ, କଉପୁନିଆ ବାବାଜୀ । କଉପୁନି ମାରିବାକୁ ଲାଜ ମାଡ଼େ । ସେ ଲୁଗାକୁ ଗେରୁଆ ରଙ୍ଗରେ ରଙ୍ଗେଇ ପିନ୍ଧେ; ଭୀମଭୋଇଙ୍କ ଭଜନ ବୋଲେ—

'ପୃଥ୍ୱୀରେ ପାପ ହେଲା ସହି
ପ୍ରଳୟ ହେଲେ ବ୍ରହ୍ମ ତହିଁ
ବଦଳ ହେଲେ ନିଜ ପିଣ୍ଡ
ବୋଝାଳ ଉଠିବ ବ୍ରହ୍ମାଣ୍ଡ ।
ଶୂନ୍ୟ ହୋଇଛି ଏ ବ୍ରହ୍ମାଣ୍ଡ
ସୃଷ୍ଟିକୁ ଚଢ଼ିଅଛି ଦଣ୍ଡ ।'

ଥରେ ଜୋରନ୍ଦା ଗାଦି ମାଡ଼ିଆସିବା ପରେ ବାରବୁଲା କଉପୁନିଆଁ ଚାଲିପଡ଼ି ଆସେଣି । ଛତା ଆଉ ବାଡ଼ି ଧରି ଭିକ୍ଷାକୁଟୀରରେ ପହଞ୍ଚିଯାଆନ୍ତି । ଖଞ୍ଜଣି ଧରି ସାରାରାତି ଭଜନ ବୋଲନ୍ତି । କେତେକ ଚେଲା ବି ଆସି ଜୁଟିଯାଆନ୍ତି ।

ପୁଅ ମଲା, ତାକୁ ଝୁରି ଝୁରି ଭାରିଯା ମଲା । ନୂଆ ସଂସାର ଗଢ଼ିବାକୁ ମନ ବଳିଲା ନାହିଁ । ସଦେଇ ମହିମା ଗୋସେଇଁଙ୍କ ଶିଷ୍ୟ ହେଲା । ସଂସାରୀ ଦେହକୁ ଶୁଦ୍ଧ, ନିର୍ମଳ କରିବା ଲାଗି ତାକୁ ଅସଙ୍ଗା ଗାଈର ମୂତ ଓ ଗୋବର ଖାଇବାକୁ ହେଲା । ତାପରେ ଦୀକ୍ଷା ନେଲା ।

ବାବାଜୀ ହେଲା ପରେ ସଦେଇଙ୍କର ତୁଣ୍ଡ ଫିଟିଗଲା । ଦୁନିଆଁ-ଯାକର କଥା ତା ଜିଭ ଅଗରେ । ସେ କହେ—କାହିଁକି 'ମିଛମାୟା'ରେ ଲଡ଼୍‌ବଡ଼୍‌ ହଉଚ ? ଜାଣି ନାହଁକି ପ୍ରଳୟ ଆସୁଚି, ସଂସାର ଅଳ୍ପ ଦିନେ ଲୋପ ପାଇଯିବ ! କେତେ କାଳ ଆଉ ବଞ୍ଚିବ ଯେ ଏତେ ଲୋଭ ! ଯାହା ସମ୍ପତ୍ତି ଅରଜିଚ, ତାକୁ ବୋହିନେବ କୋଉଠିକି ? ଖାଇ ପିଇ ସବୁ ଉଡ଼ାଇ ଦିଅ । ଯେତେ ବେଶୀ ଆରାମ କରିବାର କର । ଏ ଖଣ୍ଡ ପ୍ରଳୟ ନୁହେ, ମହାପ୍ରଳୟ; ସବୁ ପୋଛି ନେଇଯିବ ।

Digitized by srujanika@gmail.com

ସର୍ବେଇର ମନରେ କପଟ ନ ଥିଲା । ସେ ଯାହା କହିଲା, ନିଜେ ସେଇଆ ଆଗେ-କଲା । ଶାଗମାଛ ଦରରେ ସେ ଅଉଲ୍ ନମ୍ବର ଜମି-ସବୁ ବିକଲା । ସୁରକ୍ ପାଇ କଉଣ୍ଟୁନଆଁ ଯେତେ ଆସି ଜୁଟିଲେ, ଭଜନ ଆଉ ଭୋଜନରେ ଠଙ୍କାତକ ଫୁତ୍କାରରେ ଉଡ଼ିଗଲା ।

ଘର ଉଦଆ ବଞ୍ଚିଥିବା ଯାକେ ଏ ଆଉବାସ୍ନାକୁ ପାଖରେ ପୂରଉ ନ ଥିଲା । ସେ ମଲା ଖାଁସିଦନ ତାର ଏକମାତ୍ର ପୁତ୍ର ପଦଆକୁ ହାତ କରି ନେଲା ।

ଉଦଆ ମଣିଷମାରୁ; 'ଜାଙ୍ଗୁଲୁ ଜାଙ୍ଗୁଲୁ ଗତି' । ପୋଖରୀପାଣି ବସିଥିବା ବେଳେ ପାଦ ଚିପି ଚିପି ଯାଇ ମୁଣ୍ଡରେ ଲଗେଇଲା ଠେଙ୍ଗା ପାହାର । କମ୍ବୁ ଭୂଇଁ କାମୁଡ଼ି ପକେଇଲା । ଉଦଆ ସାଇକଲ୍ ମାରି ଚାଲିଲା ପୁରୀକୁ—ମାନେ ମୁଁ କାଲି ଗାଁରେ ନ ଥିଲି ! କମ୍ବୁ ଦାଦିକି କିଏ ମାଇଲା ଜାଣେ ନାଇଁ ।

ସେ ଦାରୋଗା ହେଲା । ସଇତାନି କରି ପୁଲିସ୍ ବିଭାଗରୁ ତଡ଼ା ଖାଇଲା । ବେକାର ହୋଇ ଗାଁରେ ବସିଲା । ତାପରେ ଯେତେ ଦୁଷ୍ଟ ବୁଦ୍ଧି ସବୁ ତାକୁ ଦିଶୁଥିଲା ।

ବଡ଼ ଗୋଇମାରୁ; ଯୋଉ ସ୍କୁଲରେ ପଢ଼ିଲେ 'ଠ' ବୁଲେଇଥିଲା, ସେଠି ଚାକିରି ମିଳିଲା ନାହିଁ ବୋଲି ରାତାରାତି ନିଆଁ ଲଗାଇ ଦେଇ ଛୁଟିଲା କଟକ । ନିଆଁ ହୁତ୍ହୁତ୍ ଜଳୁଥିବା ବେଳେ ଉଦଆକୁ ପଳାଇବା ଦେଖି ଜଣେ ପାଖ ପଡ଼ୋଶୀ ଖଣ୍ଡିକାଶ ମାଇଲା । ତାକୁ ଦେଖି ସାଇକଲ୍ରୁ ଓହ୍ଲାଇ ପଡ଼ି ଉଦଆ କହିଲା—ଏ ଛୁଆକି ଚାହାଁ, ଏ କଥା ଯଦି ଫୁଟିଆରି ହୁଏ, ତୋ ମୁଣ୍ଡ ରହିବ ନାହିଁ । ଲୋକଟି ଖସିଗଲା,-ଦୁଷ୍ଟ ଲୋକ ସଙ୍ଗେ କଥା ବତାବତି ଠିକ୍ ନୁହେଁ ।

ଗୋଟେ ଚେଲା ଖଣ୍ଡେ ଯେ, ଧସେଇ ପଶେ, ଆଉ ପଟାଇ ଚୁଲେ । ଚେତିବା ଲୋକକୁ ଭୁସାଟିଏ ଦିଏ; ଡର ଚୁପ୍ଚାପ୍ ରହନ୍ତି ଲୋକେ ।

Digitized by srujanika@gmail.com

ତା ଧମକ୍ ନୁଖୁର ଧମକ୍ ନୁହେଁ । କଥା ହଉଁ ହଉଁ ଚଟ୍‌କିନେ ଛୁରି ବାହାରି ପଡ଼େ । ଜୀବନକୁ ପାଣି ଛଡ଼େଇଥିବା ଲୋକ ହିଁ ତା ସଙ୍ଗେ କଥା ବଢ଼ାଏ । ଗୃହିଦଉଡ଼ିକଟା ଲୋକ ଦଶ ପଚିଶ ଖଣ୍ଡ ଗାଁରେ କୋଉଠି ଜଣେ ବା ଥାଏ । ପ୍ରାୟ ସମସ୍ତେ ନିରୀହ । ଖଟି ଖଟି ଦିନ ଯାଏ । ମଲ୍ଲ ଯୁଦ୍ଧ ଲାଗି ବେଳ କାହାକୁ କାହିଁ ?

ଉଦିଆକୁ ଦେଖିଲେ ଲୋକ ପାଞ୍ଚହାତ ଦୂରରେ ଛୁଡ଼ା ହୁଏ; ହୁଏ ତ ମନେ ମନେ କହୁଥାଏ—ତମ ଗୃହ ଖୁରିକୁ ଦଣ୍ଡବତ ବାବୁ !

ମାଡ଼ ଭୟରେ କେହି ତା ଘରେ ଲୋକ ଲାଗନ୍ତି ନାହିଁ । ତା କଥା ଠିକେ ଏପଟ ସେପଟ ହେଲେ ଚଟ୍‌କିନେ ହାତ ଲଗେଇ ଦିଏ । ନିଜେ ହଳ କରେ, ବିହନ ବୁଣେ । ମୂଲିଆ ନ ଆସିଲେ ବିଲ ଅବଗ୍ଣ ରହେ । ନିଜେ ଏକୁଟିଆ କେତେ ବାହୁବ ? ଅବଗ୍ଣ ଜମିରେ ଯାହା ବା ଧାନ ହୁଏ, ପୁଷ ଯାଇ ମାଘ ପର୍ଯ୍ୟନ୍ତ ଅକଟା ରହି ଜମିରେ ଉଜୁଡ଼େ । ଯେତେ ଅଭାବୀ ହେଲେ ତା କିଆରୀକି କେହି ହାତ ବଢ଼ାନ୍ତି ନାହିଁ । ଆଖି ପଡ଼ିଲେ ଉଦିଆ ଜୀବନ ନେବ, ଏଇ ଭୟ ।

ଉଦିଆ ମୁଣ୍ଡରେ କେମିତି ପଶିଲା—କୃଷି ଅପେକ୍ଷା ଛେଳିଚରା ଅଧିକ ଲାଭଜନକ । ଜମି ପଡ଼ିଆ ପଡ଼ିଲା; ଉଦିଆ ଶହେ ଛେଳି କିଣିଲା । ନିଜ ଗାଁରେ ତ ଛେଳିଚରା ମିଳିବେ ନାହିଁ । ସେ ଦୂର ଗାଁ, ଯୋଉଠି ଉଦିଆନାଥ ଚରିତ ଅଗୋଚର, ସେଠୁ ଦୁଇଟି ଛେଳିଚରା ଆଣି ରଖିଲା । ଖିଆପିଆ ଅସୁବିଧା ଓ ଉଦିଆର କଥାଭାଷା ଗୀତ ଦେଖି ବର୍ଷଅଧାରୁ ଦିହେଁ ଏକାବେଳକେ ଖସିଗଲେ । ସେ ଦିନର ଦାରୋଗା ଏବେ ଏକ-ପାଞ୍ଚଣ ଧରି ଛେଳି ଚରାଇ ବୁଲିଲା । ମନରେ ଘୋର ବିରକ୍ତି; କିନ୍ତୁ କଣ କରିବ ?

ତାର ଏ ହୀନ ଅବସ୍ଥା । ଧୈର୍ଯ୍ୟର ଅବତାର ଭଗବାନ୍ ବି ବରଦାସ୍ତ କରିପାରିଲେ ନାହିଁ । ଛେଳିଆ ରୋଗରେ ଦିନେ ଦି ଦିନରେ ଶହେକଯାକ ଛେଳି ମରି ଶୋଇଲେ । ମୂଳ ବୁଡ଼ିଲା । ଉଦିଆ ଏଥିରେ ଦୁଃଖୀ ନୁହେଁ, ବରଂ ଝିନ୍‌ଝଟ୍‌ରୁ ରାହା ପାଇଲା ବୋଲି ଖୁସି ହେଲା ।

Digitized by srujanika@gmail.com

ଗୋଟିକ ପରେ ଗୋଟିଏ ଛ'ଟି ବଡ଼ ହୋଇଥିଲେ । ମାଇଲୋକ ରୋଗରେ ପଡ଼ି ମଲେ କହିବା କଷ୍ଟ । ଏକଘରକିଆ, ବଡ଼ ଏକୁଟିଆ ଲାଗେ । ଭାବ ଭାବ କ ଅଚହ୍ନା ରୋଗ ଧରିଲା, ବନା ହେପାଜତରେ ଗଡ଼ ଗଡ଼ ମଲା । ସଦେଇ ଯୋଗାଡ଼ରେ ବହୁ କଷ୍ଟରେ ମଡ଼ା ଉଠିଲା ।

ମଣିଷ ସିନା ଉଦଆର କରୁ କରପାରଲେ ନାହିଁ । ଦୈବର କୂଟଚକ୍ର । ଉଦଆର ଗୋଟେ ବୋଲ ପୁଅ, ସେ ଆଡ଼ବାପୁା । ମହିମା ଗୋସେଇଁଙ୍କ ଭଗତ ସଦେଇ ହେଲା ସ୍ୱେ ଘରେ ମାମଲତକାର । ସେ ତ ବୁଝିଚ—ସୃଷ୍ଟି ଓଲଟିବ; ଉଦଆର ଏଡ଼େ ସୁନ୍ଦର ଜମିବାଡ଼ ପ୍ରଳୟ ଜଳରେ ମିଛକୁ ଭସିଯିବ କାହିଁକ ? ତାକୁ ବକଭଙ୍ଗି ନ ଖାଇବ କାହିଁକ ? ଖଣ୍ଡିକ ପରେ ଖଣ୍ଡିଏ ବକୁ ବକୁ ଉଦଆର ଜମିତକ ସଇଲା । ସଦେଇର ଆୟୁଷ ପୂରଲା । ଦନେ ଆଡ଼ବାପୁା ପୁଅଟା ଜଲ୍ ଜଲ୍ ଗୃହିଁଚ, ସଦେଇ ଭଜନ ବୋଲୁ ବୋଲୁ ତା ନିଃଶ୍ୱାସ ବନ୍ଦ ହୋଇଗଲା । ଯେତେବେଳକୁ ପ୍ରଳୟର ଖଣ୍ଡେ ମେଘ କ ଗୋଟେ ଖଣ୍ଡିଆଭୂତ କୋଉଠି ଦେଖା ନଥିଲା ।

ତା ପାଖେ ନଟୂ ମାହାନ୍ତର ଘର । ତା ବାପ ବଟୂ କୁଅଁରପୁର ମଠ ମହନ୍ତକୁ ମାର ଫେରର୍ ହେଲା । ବହୁ ଖୋଜାଖୋଜା ପରେ ଧରା-ଦଡ଼ କଳାପାଣି ଗଲା । ସାଇଭାଇ ତା ପିଲାଛୁଆଙ୍କୁ ଚଳାଚଳ କର ନିଅନ୍ତେ କଣ, ଓଲଟି ତା ଜମିତକ ମାଡ଼ବସି ଗୃଷ କରଗଲେ ।

କୁନ୍ତୀ ଯୁବତୀ; ଶାଶୂଘର ଗାଁରେ ଯେଣେ ଗୃହିଁଲେ ତେଣେ ପର । ଯାହା ଆଗରେ ଗୁହାର କରନ୍ତେ, ସେଇ ହୋଇଚ ଭଗାରି ।

ବାପଘର ଦମ୍ଭିଲା । ଝିଅ ନଟୀକ କାଖେଇ ପୁଅ ନଟୁର ହାତ ଧର ଚଲାଇ ଚଲାଇ କୁନ୍ତୀ ଆସି ହରବୋଲ ପୁରରେ ପହଞ୍ଚିଲା । ତା ବାପ ଅନୁ ମାମଲତକାର । ସେ କୁନ୍ତୀ ଶାଶୂଘର ଗାଁ ଅଡ଼ଙ୍ଗପୁର ଯାଇ କଥାଭାଷା କଲା । ଅଡ଼ଙ୍ଗପୁରଆ ଧର ବସିଲେ—ଯଦ ମୋଟ ସମ୍ପତ୍ତିରୁ ଅଧା ଠାକୁରଙ୍କ ନାଁରେ କରଦବ, ତାହେଲେ ଆମେ ଭାଇଆଙ୍କ ସଙ୍ଗେ ଲଢ଼ି ସମ୍ପତ୍ତି ଦଖଲ ଦବୁ ।

Digitized by srujanika@gmail.com

ମୋଟ ଜମି ଏକ ମାଣ । ଠାକୁରେ ନେବେ ମାଣେ । ବାକି ମାଣକ, ଦୌଡ଼ଧାପଡ଼ ଖର୍ଚ୍ଚରେ ଯିବ, ଲାଭ କ'ଣ ? ଅନ୍ତୁ ସେଥିରେ ନ ପଶି ପିଲାଙ୍କୁ ମଣିଷ କରିବା ଚେଷ୍ଟାରେ ରହିଲା ।

ନଟ୍ଟର ରକ୍ତରେ ବିଷମଞ୍ଜି । ଅନ୍ତୁ ବଦ୍ଧା ନେଲା ପରେ ସେ ମଞ୍ଜି ଗଜୁରିଲା, ଡଙ୍କ ମେଲିଲା । ମାଟ୍ରିକ୍ ଫେଲ୍ ହେଲା ପରେ ସେ ହେଲା ମୋହରିର । ସେଥିରେ ମନ ନ ଲାଗିବାରୁ ଗାଁକୁ ଆସି ପୁରସ୍ଥାନ ଅନ୍ତାର ଜମିବାଡ଼ି ବୁଝାଶୁଝା କଲା । ତା ପାଠ ବଳିଷ୍ଠକ ଏଠି କାମ ଦେଲା । ସେ ହେଲା ସହଯୋଗ ସମିତିର ପ୍ରେସିଡେଣ୍ଟ । ଜମିଦାରି, ମାଲଗୁଜାରି ଗଲାପରେ ଲୋକେ ଭାବିଥିଲେ—କରଜଲଗା କୋଠିଧର କାମ ଆଉ ରହିବି ନାହିଁ । ହେଲେ ମଣିଷ ତା ଠକ ପ୍ରକୃତି ଛାଡ଼ିବ କୋଉଠି ? ଚୂଷଣରେ ସାର ଦେବା ପାଇଁ ଲୋକେ କରଜ ନେଲେ । ଫସଲ ବିକି ଶୁଝିଲେ । କିନ୍ତୁ ନିଟ୍ଟୁ ଅସୁଲ ଫର୍ଦ୍ଦ ହେଲା ନାହିଁ । ଘର କୋରଖ କରି ଖଡ଼ିକା ଗୁଣ୍ଡୁଣି, ଶିଳ ଚକି ସୁଦ୍ଧା ବୋହି ଆଣିଲା ।

ଲୋକେ ଚହଲେ—ନଟ୍ଟୁ ବାଟରେ ହାବୁଡ଼ିଲେ ତା ମୁଣ୍ଡରୁ ଦାନ୍ତ କାଢ଼ିଦେବୁ ! ଭଅଲ ହେଲା; ନଟ୍ଟୁ ବେଶୀ ବେଶୀ ଅବାଟକୁ ଗଲା; ଅବାଟ ତ ସବୁଆଡ଼େ; ବାଟ କେତୋଟି ? ଗୃହମାଳରେ ନଟ୍ଟୁ ଦୋତାଲା କୋଠାଟିଏ ଉଠାଇଲା । କିନ୍ତୁ ବହୁ ଗୁଞ୍ଜନ ଫଳରେ ସେ ଗୃହକାରରୁ ତଡ଼ା ଖାଇଲା । ତା ବିରୁଦ୍ଧରେ ସରକାର୍ କେସ୍ କଲେ ।

ଲୋକେ ପଚାରିଲେ—କିରେ ନଟ୍ଟୁ, ଏବେ କ'ଣ କରିବୁ ? ନଟ୍ଟୁ କହିଲା—କେତେ କେତେ କେସ୍ ଉଡ଼ାଇ ଦେଉଛନ୍ତି, ଏଇଟା କ'ଣ ଗୁରୁ ! ଉପରସ୍ଥଙ୍କୁ ହାତ କଲେ ହେଲା, ସେ କାଇଦା ମୋତେ ମାଲୁମ୍ ଅଛି । ସତକୁ ସତ, ସେ କେସ୍‌ରୁ ଖସିଗଲା ।

ବ୍ରେବି ବେପାରରେ ପୋକ ସେ, ମହା ଦଲାଲ୍ । ଲୋଭରେ ବୁଡ଼ିଛି, ସ୍ତ୍ରୀ ବୁଦ୍ଧିନୀ ମାଆ କଳାଏ ବେଶୀ । ଟଙ୍କା ପାଞ୍ଚ ହଜାରକ ପାଇଁ ଏକମାତ୍ର ଗେଲବସରା ଝିଅ ବୁଦ୍ଧିନୀକୁ ଭଡ଼ାରେ ଦେଲେ, ବୁଢ଼ାବର; ଏଥିଲାଗି ଗାଁରେ ହଇଚଇ । ସାଇ ମାଇପଙ୍କ କାଉଁ କାଉରେ ବୁଦ୍ଧିନୀ ମା'ର ମୁହଁ ଭଡ଼ଙ୍ଗ ଦେଖ—

Digitized by srujanika@gmail.com

"ବୁରୁନ୍ଦୀ ମାଆ ଲୋ ବୁରୁନ୍ଦୀ ମାଆ
ଏ କି ଅକର୍ମ କଲୁ ?
ଏଡ଼କି ଟିକିଏ ଝିଅକୁ ବୁଢ଼ା ବରରେ ଦେଲୁ !"

"ଛଉ ପଛେ ବୁଢ଼ା ବର
ନାଇଁତ ପିନ୍ଧିବ ଶାଢ଼ୀ
ଗାଁ ପାହିଲେ ଦେଖୁଥିବ
ବାରହାତ ଲମ୍ବ ଦାଢ଼ି !!"

ତାପରେ ମୂଳିର ଭୂଇଁଛୁଆଁ କୁଡ଼ିଆ । ମାହାନ୍ତି କୁଳରେ ମୂଲ ଲାଗେ କିଏ ? ଉଚ୍ଚ କୁଳ ବୋଲି ଗୁଣ୍ଡି ଫୁଲାନ୍ତି ବହୁତ, କିନ୍ତୁ ଏ ଗରିବ ଭାଇଟିକି ଚଳାଇ ନେଇ ପାରିଲେ କେହି ? ମୂଳିର ଗର୍ବ—ସେ ମାଗି ଖାଉନାହିଁ, ଲଗି ଖାଉଚି । ଛେଚୁପିଠା, ନଦା ଚେଦେଇ, ପିଲାଦିନରୁ ଖଟୁଚି ସେ, ଦିନେ ନ ଅରଜିଲେ ଖାଉଁ ଉପାସ ।

ବଡ଼ ଭାଇର କି ବେମାରି ହେଲା ! ବଇଦ ଡାକି ଦେଖାଇବା ପାଇଁ ତା ପାଖରେ କିଛି ନ ଥିଲା । କତରାଲଗା ହୋଇ ଭାଇ ମଲା ।

ମୂଳି ଭାବେ—ଏ ଦୁଃଖ ପୂର୍ବଜନ୍ମର ଅଭିଶାପର ଫଳ । ଏ ଜନ୍ମରେ କିଛି ଧର୍ମକାମ କଲେ ଆଗ ଜନ୍ମଟି ଭଲରେ କଟିବ । ଠାକୁର କାମ ପଡ଼ିଲେ ସେ ଆଗେ ଯାଏ । ମେଳଣଯାତ୍ରା, ଫୁଲତୋଳା, ଭୋଗ ଯୋଗାଡ଼ ସବୁଥିରେ ଆଗୁଆ । ଠାକୁର ସେବାର ଫଳ ସେ ଏଇ ଜନ୍ମରେ ହିଁ ପାଇଗଲା । ପୁଅଟି ଟ୍ରକ୍‌ରେ ଗଲା, ଝିଅ ହେଲା ମାଷ୍ଟ୍ରାଣୀ । ନିଜେ ବି ସ୍ଥାନୀୟ ସ୍କୁଲରେ ପିଅନ ହୋଇ ରହିଲା । ଅଳ୍ପ ଦିନରେ କୁଡ଼ିଆ ଜାଗାରେ ଉଠିଲା କୋଠାଟିଏ ।

ଶଗଡ଼ ଚକ ଉପରେ ମଣ୍ଡଣି, କଳସଲଗା ଚଉଦଳ । ସେଥିରେ ବିଜେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା—ଗାଁରେ ରଥଯାତ୍ରା । ବାହୁକ ହେବ କିଏ ? ମୂଳି ଆଗେଇ ଆସିଲା । ନହିକା ବେତ ଖଣ୍ଡେ ଧରି ରଥ ଉପରକୁ ଉଠି ଗାଇଲା—

Digitized by srujanika@gmail.com

'ମଇଁଷି ପିଠିଁ ଠା କଲା
ମା ମାଉସୀମାନେ ହୁଳହୁଳି ଦିଅ
ବାପା ମଉସାମାନେ ହରିବୋଲ ଦିଅ
ବଜେ ହେଲେ ଚକାଡୋଲା' ।

ଏତିକ ଗାଇ ବେତ ହଲାଇଲାବେଳେ ମୂଳିଆ ପାଖ ପରି ଓଲଟି ପଡ଼ିଲା—ନାରାୟଣ !

ହୋ ମୂଳ କକା, ହେ ମୂଳ ମଉସା, ହୋ ମୂଳିଆ ମାମୁଁ, ହଇଓ ମୂଳମଣି ଅଜା ! ଉଠ, ଉଠ; ଆଉ ମୂଳିଆ ଅଛି ? ସେ ଯାଇ ମୂଳାଧାରଙ୍କ ପାଦପଦ୍ମୁଅଁ ପାଖେ ଘୂରୁଥିବ ।

ଚକାଡୋଳା ନାମ ଧରି ମଲା—ତରିଗଲା । ଏଡ଼େ ଭାଗ୍ୟ କାହାର ଅଛି ?

ହରିବୋଲ ହୁଳହୁଳି, ନାମ ସଙ୍କୀର୍ତ୍ତନରେ ଗାଁ ଉଛୁଳିଲା ।

ତାପରେ ହରିନାମ ସତ୍ୟ ହେ, ରାମ ନାମ ସତ୍ୟ ହେ ସଙ୍ଗେ ନୂଆ ବାହୁକର ଗୀତ ଶୁଭିଲା; ସୂର୍ଯ୍ୟ ବୁଡ଼ନ୍ତ ବେଳ ।

ତାପରେ ନାରଣ ମାହାନ୍ତି ଘର; କଳମୀ ଗୃହକର୍ତ୍ତା ସରିଲା । ଗାଁରେ ଗୃହବାସ ବୁଝିଛନ୍ତି; ମାମଲତ କଥା ବହୁତ କହନ୍ତି, ସେଥିରେ ପଶନ୍ତି ନାହିଁ । ଗଡ଼ ଗଡ଼ କରି ବହୁତ କହିଯାନ୍ତି । 'ସଭାରେ ନ ଫିଟଇ ପାଟି'; 'କାଦୁଅରେ ପଶିବା ନାହିଁ କି ଗୋଡ଼ ଧୋଇବା ନାହିଁ'—ଏଇ ମିତ । 'ଘର ବାଡ଼ଆଡ଼େ ବସାଇ ହାଟ'—ମାନେ ନିଜେ ଖଟି ଯେତେ ପରିବା ସେ କଲେ; ଏବେ ମନ ଗୁଡ଼ିଯାଇଚି । ବାଡ଼ ଭାଙ୍ଗିଲେ ବୁଲା ଗୋରୁ, ମାଙ୍କଡ଼ ଖାଇଲେ ବରଗୁଡ଼ା, ଜହ୍ନୀ, କାକୁଡ଼; ଗ୍ରେର ଖୋଳ-ନେଲେ ଖମ୍ବଆଳୁ, ସାରୁ; ନାରଣ ଦନେ ରାଗି କହୁଥାଏ—ଆରେ ନୁଣ୍ଡୁଛଣା ଗ୍ରେର, ତୋ ଅଲକ୍ଷଣା ହାତ ବାଜିଲା ଦିନୁଁ ଲେମ୍ବୁଗଛରେ ଫୁଲଟାଏ ବି ଧରୁନାହିଁ । ସତେ ମ, ଏ ସୁକୁମାରିଆ ଗଛ ଗୁଡ଼ିକ ବାରେ, ଗ୍ରେର ହାତ ବାଜିଲେ ଆଉ ନ ଫଳେ ! ପ୍ରକୃତରେ ପ୍ରତି ବାଡ଼ରେ ହାଟ ବସିଥିବା ଦୃଶ୍ୟ ଆଉ ଦେଖିବାକୁ ମିଳେ ନାହିଁ, କି ଗରିବ କି

Digitized by srujanika@gmail.com

ଧର୍ମ ବ୍ୟାଗ ଧରି ହାଟରେ; ସେଠି ଭଡ଼, ମହର୍ଘ ନ ହେବ କାହିଁକି ? କିଏ କରୁଚି କି ? ସମସ୍ତେ ପର ହାତକୁ ଗୃହିଁ ବସୁଛନ୍ତି ।

ବଡ଼ଭାଇ ରାଜୁବାବୁ ଓଭରସିଅର, ହାତରେ ପଇସା ଖଲଖଲ । ଏଠି ସେଠି କେତେ ଘରବାଡ଼ି କରିଛନ୍ତି, ଲାଞ୍ଚ ଖାଇ କରିଛନ୍ତି ବୋଲି କେହି କହିପାରୁ ନାହିଁ; ମହାଲକ୍ଷ୍ମୀଙ୍କ ବରାଦ୍‌ରେ ବିଶ୍ୱକର୍ମା ତୋଳି ଗୃଲିଛନ୍ତି ସତେ ! ଗାଁରେ ଜମି ବାଡ଼ି ବି କେତେ କରିଛନ୍ତି, ସବୁ ମାଇପ ନାଆଁରେ; ମାଇପ ! ସେ ଲକ୍ଷ୍ମୀ । ଏ ଗୁଣ୍ଠିରେ ପାଦ ଦେଲା ଦିନୁଁ ସମ୍ପତ୍ତି ବଢ଼ିଲା, ଜୁଆର ପରି ମାଡ଼ି ଗୃଲିଛି ।

ସେ କେତେ କାଲୁ ମନ୍ତ୍ର ଫୁଙ୍କୁଛି—ଏଡିକି ବେଳୁ ବାଟ କରି, ନଇଲେ ଭଜଆ ମୁଦେଇ ହବ, ହାଁ, ବେଳସୁଁ କହିଦେଲି । ରାଜୁଆ କହିଲା—ମୁଁ କଣ ସେ କାମ ବାକି ରଖିଚି ? ଭଜଆଟା ମଣିଷ ନୁହେଁ, ତା କାନେ କାନେ କହିଲି—ମୋ ପାଖେ ପାଖେ ରହ, ପଇସା ଗୋଟେଇ ପାରିବୁ ନାହିଁ । ସେ କଣ କହିଲା ଜାଣ ? ଯେତେ ହେଲେ ମାଷ୍ଟରିଆ ବୁଦ୍ଧି ଟିକି ! କହିଲା—ମୋ ଦୁଃଖ ମୋର, ମୋ ସୁଖ ମୋର । ମୁଁ କାହାର ବୋଲକରା ହେବ ନାହିଁ । ସେଇ ଦିନୁଁ ମୁଁ ତା ମୁହିଁ ଗୃହେଁ ନାହିଁ ।

ଭଜଆକୁ ବଡ଼ଭାଇ ଅମଣିଷ କହିଲା କାହିଁକି ? ଅବାଟରେ ଧନ କମେଇ ନିଜକୁ ରାଜୁଆ ମଣିଷ କହେ କୋଉ ସାହସରେ ?

ବଡ଼ଭାଇର ଗତିଗତି ଦେଖି ଭଜା ଆପେ ଆପେ ପାଖେଇଗଲା, ପୈତୃକ ଜମି ତିନମାଣ ଆଉ ଘର ଅଗଣା ନେଇ ।

ସେ ହାତଗୃଷ କରେନାହିଁ । ସେ ହିସାବ କରି ଦେଖାଇ ଦେଲା ଯେ ସାଆନ୍ତିଆ ହାତଗୃଷରେ କିଛି ଲଭ ନାହିଁ । ସହାନ୍ତିଙ୍କି ସେ ସୁହାଏ ।

ଭଜା ବର୍ଷକେ ଦଶ ଥର ଭାଗ ଗୃଷ ଜମି ତନଖି କରେ, ପାଖ ଜମିକି ତୁଳନା କରି ନିଜ ଅମଳ କଳନା କରେ । ଯେ ଭଲ ନ ଚଷେ, ତା ଜମି ଛଡ଼ାଇ ନିଏ ।

Digitized by srujanika@gmail.com

ଭଳ ଦେଖି ଗୃହିଁ ଖର୍ଚ୍ଚ କରେ, ସତରେ ଏଇତକ ଜମିବାଡ଼ି,
ଅଳ୍ପ କିଛି ଦରମାରୁ ସଞ୍ଚୟ କରି ଆଶ୍ଚର୍ଯ୍ୟ, ସେ କୋଠାଟିଏ ତୋଳିଲା;
ସଞ୍ଚୟ କରିବା ପ୍ରକୃତରେ ଏକ ସଦ୍‌ଗୁଣ ।

ଏ ଲୋକଟା ବାହାରେ କେତେ ନୁଆଁଣିଆ, ନଡପଡ ଦିଶେ,
ଭିତରେ କେଡ଼େ ଟାଣ ! ଯିଏ ତାକୁ ଶିଖେଇମଣେଇ କେହି କିଛି କରେଇ
ନେଇ ପାରିବ ନାହିଁ ।

ଏ ଲୋକଟି ଧନେ ହେଲେ ଜର କି କିଛି କଦର୍ମ ରୋଗ ଭୋଗ
କରିନାହିଁ; ଦେହକୁ କି ସୂନ୍ଦରରେ ଏଡ଼େ ଭଲ ରଖିଛି ସେ ! ଏବେ
୮୫ ବର୍ଷରେ ସେ ସାଇକଲ୍ ଚଢ଼େ । ସାଇକଲଟି ବଦଳେ ନାହିଁ,
ସଫାସୁତୁରା ହୋଇ ଏବେ ବି ସେଇଟା ଚକ୍ ଚକ୍ କରେ । ଗୁଡ଼ାଏ
ଜିନିଷ କିଣିଦେବା ବଡ଼ କଥା ନୁହେଁ । ରଖିଥୋଇ ଜାଣିବା ବଡ଼
କଥା ।

କାପଟ ମଫସଲରେ ରହି ମଧ୍ୟ ସେ ଭୁଣ୍ଡ ହୁଡ଼େନାହିଁ, କାହା ସଙ୍ଗେ
କେବେ ଝଗଡ଼ା କରେ ନାହିଁ । ମନୋମାଳିନ୍ୟ ହେଲେ ସେ ଚୁପ୍ କରି
ଲୋକ ପାଖରୁ ଖସି ଆସେ ।

ସେ କିଛି ବହିପତ୍ର ପଢ଼େ ନାହିଁ; କେବଳ ପଢ଼ୁଥାଏ ଏ ସଂସାରକୁ
ଥରକୁ ଥର । ଭାବେ—ଯିଏ ତାକୁ ପଢ଼ିବା ପରେ କି ଲୋଡ଼ା ଅନ୍ୟ ପାଠ ?

କେବେ ମନ ଦୁଃଖରେ ବସେ ନାହିଁ, କାହାକୁ ଥଟ୍ଟାତାମସା
କରେ ନାହିଁ; ଭୁଣ୍ଡ ଚପି ଚପି କଥାବାର୍ତ୍ତା କରେ, ଯେତକ ଦରକାର
ସେତକ ।

ତା ଘରକୁ ଠିକଏ ଗୁଡ଼ ବାନ୍ଧିଥା ବେହେର ଘର ।

ହାତରେ ଓହଳିଛି ଗୋବର ଘଡ଼ି । ବିଲ ହିଡ଼ରେ ଗୋରୁ
ଚରାଇଲା ବେଳେ ଧାନ ଗଛରେ ଗୋବର ମାରେ । ତାହେଲେ ଗୋରୁ
ଧାନରେ ମୁହଁ ମାରିବେ ନାହିଁ, ହିଡ଼େ ହିଡ଼େ ଚରିବେ ।

ପଛରେ ଦେଖିଲା ବେଳକୁ ହିଡ଼ପାଖ ଧାନ ଖୁଣ୍ଟା । 'କିରେ
ଜାନ୍‌ଥି, ମୋ ଧାନ କାହିଁକି ଖୋଇଲୁ ?'

Digitized by srujanika@gmail.com

'ମହାପୁରୁଷଙ୍କ ଦୋହ୍ନ,' 'ଜଗନ୍ନାଥଙ୍କ ଗଣେ', ଏ ହେଉଁଗିଆ କାମ ମୁଁ କରିବ ? ତାହେଲେ ମତେ ଅଶହ୍ନା ବ୍ୟାଧି ଘୋଟିଯିବ, ବାବୁ । କୋଉ ବବାଦିଆ ଯ୍ୱାଙ୍କୁ ଚରେଇ ମୋ ନାଆଁରେ ଅଠା ବୋଳୁଛୁ ! ହଁ, ଗୃହଗୋଡ଼ିଆ ଜନ୍ତୁ ବାନ୍ଧିଚୁ ଯେତେବେଳେ, ଖାଇଲେ ଖାଇଲା, ନ ଖାଇଲେ ବ ଖାଇଲା; ଆମେ ଅପନନ୍ଦା ଶୁଣିବୁ ନାଇଁ ତ, ଆଉ ଶୁଣିବ କିଏ ?

ଝଡ଼ିଆ ପାଗରେ ଓପାସ ଭୋକରେ ଗାଈଙ୍କର ଅବସ୍ଥା ନଥାଏ । ବାନ୍ଧୁ ମିଛ କାଇଁକ କହିବ, ଖଡଅଗରୁ ଗଡ଼ଅଧିଆ ଥୋଡ଼ ଜିଆଳ ଗୋଛାଏ କାଟି ଆଣି ଗାଈଙ୍କ ପାଳକ କରେ, ବାଡ଼ରେ ତ କୁଟା କ ନଡ଼ା କେଗାଏ ନାଇଁ, ଆଉ କଣ କରନ୍ତା ସିଏ ?

'ତୋ ସମୁଦୁଣୀ ଗଣେ, ନମିତ୍ୟରେ କ୍ଷୀରରେ ପାଣି ଦବୁ ନାଇଁ, ପାଞ୍ଚଜଣରେ ଲେକହସା ହେବ ମୁଁ ।' ବଗ୍ଦ୍ଦେଇବାଳ କେତେ କଥ କହେ । ଛି, ଏ କୁଳବୁଡ଼ା କାମ ମୁଁ କରିବ ? ଆଖି ଛୁଉଁଛୁ ବୋଲ ବାନ୍ଧୁ ପତା ଦୁଇଟା ଛୁଇଁ ଦଏ ।

ଟୋପେ ପାଣି ନ ଦେଲେ ମଇଁଷି ବା ଗାଈ ଚରରୁ କ୍ଷୀର ମରଯାଏ । ଏ ବଧି ପାଳୁ ପାଳୁ କଛୁ ଅବଧି ହୋଇଯାଏ ତ କଣ କରିବା ? ମୋଟ କ୍ଷୀର ତ ହୁଏ ଦଶ ଲିଟର, କୋଡ଼ିଏ ଲିଟର ମାଗିଲେ ଦେବ କୋଉଠୁ ? ତେବେ ଯାହାହଏ କୂଅ ପାଣି, ମୋ ଦୁଧରୁ ଚୁଙ୍ଗୁଡ଼ି-ମାଛ ବାହାରଲା ବୋଲି କେହି ନନ୍ଦା କରିପାରିବ ନାଇଁ ।

ମଇଁଷିଙ୍କୁ ଘରେ ରଖିଲେ କୁଅଡ଼େ ଘର ପୋଡ଼ିଯାଏ । ଏଇ ବଶ୍ୱାସରେ ବାନ୍ଧୁ ତାଙ୍କୁ କ ଖରା କାକର, କ ବର୍ଷାଝଡ଼ ସବୁ କାଳେ ପୋଖରୀ ହୁଡ଼ାରେ ପକାଏ । ଧୂଡ଼ୁକ ଗୀତରେ ମୋ ନଦ ଭାଜେ, ପାହାନ୍ତିଆ ପହରକୁ । ପୁଣି ଘମାଘୋଟିଆ ଲାଗିଯାଏ – ଗୀତ ! ଆହା କ ଗୀତ ରେ······

ଘାସ ଖାଇବାକୁ ଜଗାବଳିଆ ରେ
ବାଟ ଚାଲିବାକୁ ହର
ଦୁଧ ଦୁହିଁବାକୁ ଗେଡ଼ୀ ସୁନ୍ଦରୀ ଲୋ
ତା ଚର ଝମକା ନେଳୀ ।

Digitized by srujanika@gmail.com

## ।। ତିନି ।।

ସନ୍ତୁ ଜେନା ମୋ ସମ୍ପନ୍ଧ; ଘର ଢେଙ୍କାନାଳ । ଜଗନ୍ନାଥ ଦର୍ଶନରୁ ଫେରି ବାଟରେ ଆମ ଗାଁ ହରବୋଲ ପୁରେ ଦି ଗୁରୁଦିନ ରହଣି । ମୋ ସାଙ୍ଗେ କଥା ହଉଁ ହଉଁ କହିଲେ—ହିଅ ଦେଇ ଶରଣ ପଶିଲି; ହେଲେ ଏ ଗାଁଟି ବୁଲି ଦେଖିନାହିଁ । ୧

ମିତ୍ରୁ—କଣ ଆଉ ଅଧିକା ଦେଖିବ ? ସବୁ ଖଡ଼ା ବଡ଼ ଥୋଡ଼, ଥୋଡ଼ ବଡ଼ ଖଡ଼ା । ସେଇ ହଳଲଙ୍ଗଳ, ସେଇ ଶଗଡ଼ବଅଳ, ସେଇ ଲଙ୍ଗଳା ଛୁଆ, ସେଇ କଅଁଳା ବାଛୁରୀ ଟିଆଁ, ସେଇ ଗାଁ ମାଇପୀଙ୍କ କଳି, ସେଇ ଭେଦ, ସେଇ ବାଦ······

ସନ୍ତୁ—ନାଇଁମ ସମ୍ପନ୍ଧ, ଗଡ଼ଜାତର ପାହାଡ଼ୀ ଗାଁ, ତୁମ ଶାସନୀ ଗାଁ ଏକାପରି ନୁହେ । ତୁମ ଗାଁ ଗହର ଏକ ସମାନ । ଯୁଆ ତୁଳନାରେ ଆମ ଆଡ଼ ଜମି ଝାଙ୍ଗରା; ଖପରା । ଆମ ଗାଁଟା ପାହାଡ଼ ଅଧରେ, ଡ଼ିପ ଡ଼ାଲୁ ଜମି, ଗୋଡ଼ମିଶା ମାଟି । ବିଲରେ ପାଣି ଜମି ରହେନାହିଁ, କାର୍ତ୍ତିକ ଅଧା ଯାଏ ଲଗ୍ ଲଗ୍ ବର୍ଷା ହେଉଥିଲେ ଧାନ ହୁଏ; ଅସରାଏ ପାଣି ଅଭାବରୁ ବେଳେ ବେଳେ ମରୁଡ଼ି ମରେ ।

ଆମ ମୁଣ୍ଡକୁ ଛୁଇଁ ଛୁଇଁ ମହୁଫେଣା ପରି ମେଘ ଖସିଯାଏ । ଦିନ ଥାଉଁ ଥାଉଁ ଅନ୍ଧାର ଘୋଟିଆସେ । ଶାଳ ପିଆଶାଳ ଜଙ୍ଗଲ । ଦିନ ଦି ପହରେ ବାଘଗୋଳି ଲାଗେ, ମହୁଲ ଗୋଟାଇଲା ବେଳେ ଭାଲୁ ଭେଟଣା ପଡ଼େ ।

ଆମ ଆଡ଼େ ଶଗଡ଼ ଅଚଳ । ଯୁଆ ବାଡ଼ିକ ତା ଦାଣ୍ଡ ଲାଗିଛି । ଛଡ଼ା ଛଡ଼ା ଘର । ନିଆଁ ଲାଗିଲେ ଗୋଟିଏ ଘର ପୋଡ଼େ । ତମ ଆଡ଼େ ଓସାରିଆ ଦାଣ୍ଡ, ଦି ପଟେ ଦି ଧାଡ଼ି ଘର, ଲଗାଲଗି ଚାଳ, ଗୋଟିଏ ଘରେ ନିଆଁ ଲାଗିଲେ ଗୋଟା ଗାଁ ପୋଡ଼ିଯାଏ ।

Digitized by srujanika@gmail.com

ମିଛୁ—ମୁଁ କଣ କହୁଥିଲି କି ଗାଉଁଲି ଘର ସବୁଠି ଦୁଃଖୀ, ଗଡ଼ଜାତରେ ଯାହା, ମୋଗଲବନ୍ଦୀରେ ସେଇଆ । ଏଠି ଲୋକେ ଅଧା ଓପାସରେ ଶୁଖୁଆ ହୋଇ ମରନ୍ତି, କାଦୁଅ ପାଣି ପିଇ ମରନ୍ତି, ବନା ଚିକିତ୍ସାରେ ମରନ୍ତି ।.ଅକାଳ ମୃତ୍ୟୁ ସହର ଅପେକ୍ଷା ଆମ ଏ ମଫସଲରେ ବହୁତ ବେଶୀ ।

ସତୁ—ତଥାପି ତୁମ ଗାଁ ଆମ ଗାଁ ଲୋକ ଏକା ନୋହିପାରନ୍ତି । ତୁମଠୁଁ ଆମର ତଫାତ୍, ଉଆରୁ ଉଷୁନା ଯେପରି । ତୁମେ ଦୁଃଖୀ, ଆମେ ଘୋର ଦୁଃଖୀ ।

ମିଛୁ—ସହର ପାଖ ଗାଁ କଥା ଛାଡ଼ ସମୁଦ୍ର । ଆମ ଆଡ଼େ ଏମିତି ଗାଁ ଅଛି, ଯୋଉଠି କି ରାସ୍ତାଘାଟ ନାହିଁ । ବର୍ଷା ଦିନେ ଯମ ପଶି ପାରିବ ନାହିଁ । ନଈ ପାଣି ଘେରରେ କେତେ ଗାଁ ଟାପୁ ପରି ଦିଶେ । ମଣିଷ ମଲେ ନଈ ସୁଅରେ ଭସାଇ ଦିଅନ୍ତି, ଜାଳିବାକୁ ଶୁଖିଲା ଜାଗା ନାହିଁ ବା ଜାଳେଣି ନାହିଁ । ଦାନା ବିନା ମଣିଷ ଆଉ ଗୋରୁଗାଈଙ୍କ କଣ୍ଠା ଝୁଲେ ।

ବେଶୀ ବା କମ୍ ହେଉ, ଗୋଟା ଓଡ଼ିଶାର ଅଧିକାଂଶ ଗାଁ ଲୋକେ ଦୁଃଖୀ । କିନ୍ତୁ କାହିଁକି ? ଅଭାବ ଦୁଃଖ ନିଶ୍ଚୟ, କିନ୍ତୁ ବଡ଼ ଦୁଃଖ ନୁହେ । ବଡ଼ ଦୁଃଖ—କେହି କାହାର ଶ୍ରୀ ସହି ପାରନ୍ତି ନାହିଁ, ଯା ଛୁଇ ଦେଖିଲେ ତା ନାହି ତଏଁ; ଈର୍ଷାହିଂସା, କଳିତକରାଳରେ ଗାଁ ବୁଡ଼ି ରହିଛି । କେଉଁଠି ଦୁଷ୍ଟ ଦୁର୍ଜନ ମାତି କାହାକୁ ସୁଖଶାନ୍ତିରେ ରହିବାକୁ ଦିଅନ୍ତି ନାହିଁ । ଶାନ୍ତଶିଷ୍ଟ ସଜ୍ଜନ ଏକାଠି ହୋଇ ଦମନ କରିବା ତ ଦୂରର କଥା, ଏଇ ଜନ୍ତୁମାନଙ୍କୁ ରୋଧ ବି କରିପାରନ୍ତି ନାହିଁ, ଭୟରେ ଆଡେଇ ରହନ୍ତି । ବିନା ଯୁଦ୍ଧରେ ଶିଷ୍ଟଙ୍କ ପଛଘୁଞ୍ଚା ଗ୍ରାମ୍ୟ-ଦୁର୍ଗତିର ବଡ଼ କାରଣ । ଧୈର୍ଯ୍ୟ ଧରିବ ଯଦି, ସେଇ କାହାଣୀ କହିବି; ନଇଲେ ଆମ କାହାଣୀ ଆମଠି ରହୁ ।

ଗୋଟିଏ ସର୍ତ୍ତ—ଖାଲି ଗାଁରେ ଆଖି ପକାଇଯିବ । ମୁଁ କିଛି କହିବି, କିଛି ବା ନ କହିବି । ପଚାରିବ ନାହିଁ—ଏ କିଏ; ସେ କିଏ, ଏ

Digitized by srujanika@gmail.com

ତାହ ଦେବା ହେଲା କପଣ ? ସେ ତାହରେ କୋଠା ଉଠାଇଲା କଏ ? ଏ ଖଳାବାଡ଼ ବା ଚାଲଘଦା କାହାର ? ଖାଲ ଜାଣିହେବ ପିଣ୍ଡରୁ ବ୍ରହ୍ମାଣ୍ଡ ।

ସେମିତ କହୁଥିଲେ ମୋ ପୁରଣ ମୋଟେ ସମ୍ଭବ ନାହିଁ । ଘର ବା ଲୋକ ଦେଖି ଯାହା ଠିକ୍ ବୁଝିବ, ଠିକେ ଠିକେ କହିଯିବ ।

ସତ୍ତୁ—କଥାର ସୁଅ ଭାଙ୍ଗିଲେ ମଜ୍ଜା ରହେନାହିଁ, ଭୁଝୁଛୁ । ମୋର ବା ଏତେ ନଷ୍ଟରେ କଏ ପଶେ ? ଯେତିକ ଜାଣିଲ ସେତିକ । ତେବେ ଆଗରୁ ଗୋଟେ ପ୍ରଶ୍ନ ପଚାରିଦେଏଁ—ଗାଁ କେତେବେଳେ ଭଲ ଲାଗେ ?

ମିତ୍ତୁ—ପାଣିର ମାଛକୁ ଯଦି ପଚାର, ପାଣି କେତେବେଳେ ଭଲ ଲାଗେ ? ସେ କଣ ଉତ୍ତର ଦେବ ? ଯଦି ପାରନ୍ତା, ଏମିତ କିଛି ନ ହିଅନ୍ତା—ନୂଆ ପାଣି ପଡ଼ିଲା ବେଳେ । ସେତେବେଳେ ମାଛର ମଜ୍ଜା ଯେ ଖୁବ୍ ଉତ୍ତଳା ହୁଏ, ତା ଆଚରଣରୁ ଜଣାଯାଏ । ତେବେ ମୁଁ ମଣିଷ । ଭଲ ମନ୍ଦ ବାରେ ବେଶୀ । କଣ କହିବ ?—ମନ ଭଲ ଥିଲେ ଗାଁ ଭଲ ଲାଗେ ? ଗାଁ ଭଲ ଥିଲେ ମନ ଭଲ ଲାଗେ ? ହଁ ସେମିତ କିଛି । ଗାଁରେ ଅକାଳ ଅବେଳ ପଡ଼ିଲେ ମତେ ଭାରି ଖରାପ ଲାଗେ; ସାତଦିନଆଁ ଝଡ଼ିଆ ପାଗ, କାଦୁଅ ପଚ ପଚ ଖସଡ଼ା ବାଟ, ଘରେ ଜାଳ ନ ଥାଇ ଚୂଲ ଗ୍ରୈବାଇବା ଅବସ୍ଥା ଯେତେବେଳେ ଉପୁଜେ; ମତେ ଖରାପ ଲାଗେ ।

ସତ୍ତୁ—ଆମ ପଥୁରିଆ ଦାଣ୍ଡ କେବେ କାଦୁଅ ହୁଏନାହିଁ । ଆମ ଆଡ଼େ ଜାଳ ଅଭାବରୁ କେହି ଉପାସେ ଶୁଏ ନାହିଁ । ମତେ ଖରାପ ଲାଗେ, ଯେତେବେଳେ ଅସରାଏ ପାଣି ଅଭାବରୁ ଥୋଡ଼ ଧାନ ବିଲରେ ଜଳିଯାଏ, ହଇଜାରେ ଜଣକ ପରେ ଯେତେବେଳେ ଆଉ ଜଣେ ଶୋଇ ଯାଉଥାଏ ।

ମିତ୍ତୁ—ଦେ ଛାଡ଼ ସେ କଥା, ଚାଲ, ଏବେ ଗାଁ ଦେଖିଯିବ । ଆଗେ ବ୍ରାହ୍ମଣ ଶାସନ, ସବୁଠୁଁ ସୁସ୍ଥୀ ଏଇ ସମାଜଟା, ଉଚ୍ଚ ପିଣ୍ଡାରୁ ଓହ୍ଲାନ୍ତି ନାହିଁ, ବଡ଼ ବଡ଼ କଥା କହନ୍ତି, ଲଘୁ କ୍ରିୟା । ଶୀତ ଦିନେ ବନାତ ଘୋଡ଼ି ହୋଇ ବସନ୍ତି, ଛତାବାଡ଼ି ଧରି ଯିବାଆସିବା କରନ୍ତି ।

Digitized by srujanika@gmail.com

ଜମିବାଡ଼ ଆସ୍ତେ ତଳ ପାହ୍ୱଆକୁ ଖସି ଗଲାଣି । ଯାହା ଅଛି, ଭାଗ ଲଗାନ୍ତି । ଗାଁରେ ମାମଲତକାରୀ କରନ୍ତି । ବାହାରେ ଗୋବନ୍ଧ ବାଆ ବାଜେ ନାହିଁ; କଚ୍ଛଟା ଉପରଖିଆ, ଉପରମୁହାଁ । ଷୋଳ ଶାସନ, ବତିଶି କରବାଡ଼ ଗ୍ରାମରେ ବଡ଼ୁଘର, ବଲଭଘର, ଶୁଦ୍ଧିଶ୍ରାଦ୍ଧ, ପୂଜାଧୁଜା, ଦାଆଁମଙ୍ଗୁଳା, ହାଣ୍ଡିମଙ୍ଗୁଳା, ବେଷଣି, ଫୁଲ ସଭରେ ଶ୍ଳୋକ ବୋଲି ଗଲେ । ସେହି ପ୍ରକାର ଆଶୀର୍ବାଦ, ମାନମର୍ଯ୍ୟାଦା, ଚିଠାଲେଖା; ମୁରୁବିଦାଆ, ଘରବେଭାର ଖାଣ୍ଡି ବ ଚଳେ ।

ଏବେ ବ୍ରାହ୍ମଣଙ୍କ ଶିଖ ମଉଳଛି । ଧନ ନାହିଁ କ କ୍ଷମତା ନାହିଁ; ଶାସନର ଅଧୋଗତି, ଠାକୁରମାନଙ୍କ ଦୁର୍ଗତି । ଅଳଙ୍କାର ଚୋରି, ଏପରକି ଠାକୁର ମୂର୍ତ୍ତି ଚୋରି ନିତିଦିନିଆଁ କଥା ହୋଇଅଛି । ଦେବ-ଦ୍ୱିଜେ ତାଦୃଶ ଭକ୍ତି ନାସ୍ତି ।

ଭୋଗବଣ୍ଡାରେ, ଏପରିକି ଠାକୁରଙ୍କ ଆଳତି କାଠି ଜଳାରେ ବ୍ରାହ୍ମଙ୍କ ଦାରିଦ୍ର୍ୟ ଫୁଟି ଦିଶେ । ଅବସ୍ଥା ଏପରି ହେଲାଣି ଯେ କେହି କେହି ମୂଲ ଲାଗିଲେଣି, କୁଲିଗିରି କଲେଣି । ଏତେ ଦୁଃଖରେ ଲଙ୍ଗଳ କଣ୍ଢିରେ ହାତ ପକାଇ ନ ଥିଲେ । ଟ୍ରାକ୍ଟରର ଗଲୁ ହେଲା ପରେ ଏବେ ବାହ୍ମଣ ଚଳଉଛି, ଏଥିରେ ମାସାନ୍ତ, ସଂକ୍ରାନ୍ତି, ଏକାଦଶୀ ଏପରିକି ରଜ ପର୍ବର ଭୂଇଁ ନଅଣ ମାନୁନାହାଁ ।

ପହିଲେ ହାବୁଡ଼ଲେ ଖୁସି ମିଶ୍ରେ—କପାଳରେ କେଡ଼େ ବଡ଼ ଚନ୍ଦନଚୋପା, କାଖରେ ଛତା, ହାତରେ ବାଡ଼, ଆଖିରୁ ଖୁସି ବୋହି ପଡ଼ୁଛି । ଘରେ ଦାନା ନାହିଁ, ସେ ଲାଗି ଭାବନା ନାଇଁ । ଯୋଉଦିନ ଯାହା ମିଳିବ, ଖିଆଯିବ । ମିଳିଲେ ବାଘର ଆହାର, ନଇଲେ ପବନ ଆହାର । ମୁହଁ ସବୁବେଳେ ଖଲଖଲ, ଟିକେକେ ଶ୍ଳୋକ ବା କଚ୍ଛି ବଚନିକା ବାହାରି ପଡ଼େ । ହସମୁହଁ ଦଣ୍ଡବତ କଲା ପରେ ମିଶ୍ରେ ଲମ୍ବା କଇଲଣଟାଏ କରି ପଗୁରିଦେଲେ—କହିଲ—

କରଜ ନ କର ଋଣୀ କିଏ ?<br>
ଆଖି ଥାଉଁ ଥାଉଁ କାଣୀ କିଏ ?

Digitized by srujanika@gmail.com

ମଣିଷ ଭିତରେ ଲୁଣୀ କିଏ ?
ରଜା ନ ଥାଇ ରାଣୀ କିଏ ?

ସବୁ ମିଛୁ ମୁହଁକୁ ଚାହିଁଲ—କିଏ ? ସତେ କିଏ ?

ମିଛୁ ନାଁ ଦିଆରେ ଓସ୍ତାଦ୍, ଚଟାପଟ୍ ଉତ୍ତର ଦେଲା—କଣ୍ଢ଼ୁରୁଣୀ, ନାହାକାଣୀ, ପାଲୁଣୀ, ବାଉରାଣୀ ।

କହିଲ— 'ବୃକ୍ଷାଗ୍ରବାସୀ ନ ଚ ପକ୍ଷିରାଜଃ
ଅମ୍ବୁ ବହନ୍ତ ନ ଚ ମେଘମାଳା
ତ୍ରିନେତ୍ରଧାରୀ ନ ଚ ଶୂଳପାଣି
ବଲ୍କଳଧାରୀ ନ ଚ ରାମଚନ୍ଦ୍ରଃ ।'

ମିଛୁ—ଧାନ ବୁଣା ହେଲା ପରେ ଯାହା ସୁନା ଫୁଲ ବୁଣିହୋଇ ପଡ଼ିଛି, ବର୍ଷସାରା ଯେ ଫଳେ, ସବୁ ପର୍ବରେ ଅନୁକୂଳ, ହରିବୋଲ ପୁରର ସଦାଜାଗ୍ରତ ପ୍ରହରୀ—ଶ୍ରୀଫଳ ବୃକ୍ଷ ।

ଆଚ୍ଛା କହିଲ—'ଅଜୀବ ମୁଣ୍ଡରେ ଜୀବ ବାସ କଲା
ବାସ କଲା ବୁଡ଼ିଆଣୀ
ଗୃହପାହିଆ ଉପରେ
ନପାହିଆ ପଡ଼ିଲା
ଦ୍ୱି ପାହିଆ ନେଲା ଟାଣି ।'

ମିଛୁ ଭବ ଭବ ବହୁ କଷ୍ଟରେ ଏଥର କହିଲା—ପୋଖରୀରେ ପୋତ ପଡ଼ିଥିଲା । ତା ପିଠିରେ ମାଛଟିଏ ଡେଇଁ ପଡ଼ିଲା । ସେ ଡେଉଁ ଡେଉଁ ତାକୁ ଚିଲଟାଏ ଝାମ୍ପି ନେଲା ।

ମିଶ୍ରେ ପିଠିରେ ହାତ ମାରିଦେଇ କହିଲେ—ବାଃ, ବାଃ । ଏଇ ଗୋଟିକି କହି ଦେ—ମୁଁ ମନ ଖୁସିରେ ମୋ ବାଟରେ ଯିବି—

'ଅହିମକର ତାପ ନାଶେ ଶୋଭା ସାରସଚନ୍ଦେ ।' ମୁଁ ଅଧା ମୂର୍ଖ, ମହାପ୍ରଭୁ; ଛନ୍ଦରେ ମୋଟେ ପ୍ରବେଶ ନାହିଁ; ଯା କହି ମିଛୁ ବଦାପୁ ଦଣ୍ଡବତଟିଏ ପକାଇଲା ।

Digitized by srujanika@gmail.com

ଏ ଘରଟି ବୁଲି ମାଉସୀର । ତା ନିଜ କଥା ସେ ଏମିତି କହେ – ବାଲୁତ ବୟସରେ ବାହା ହେଲି । ଘରେ ରହିଲାକ୍ଷଣି ଗରିବ ବାପ ମାଆ ପୋଷି ନ ପାରି ଶାଶୁ ଘରକୁ ବିଦା କରିଦେଲେ । କିନ୍ତୁ ଆଶୀର୍ବାଦ ଘର ହେଲନାହିଁ । ମୋ ସାତବର୍ଷ ଦିନୁଁ ସେ କଲିକତାରେ । ସେ ଯିବାର ଯୁଗଟାଏ ଗଲା । ତାଙ୍କର କିଛି ଖବର ମିଳିଲା ନାହିଁ । ଗାଁବାଲା ପଲିଶପନି ତାହା କରାଇ ଖଡ଼ୁକାଚ କାଢ଼ିବାକୁ ଗଲାରୁ ବୁଲି ଗୋଡ଼ତଳେ ପଡ଼ିଲା – ମତେ ବର୍ଷଟିଏ ସମୟ ଦିଅ । ଏ ଭିତରେ ସେ ନ ଫେରିଲେ ରାଣ୍ଡ କରିବ । ମୋ ଦାଇନି ଶୁଣାଗଲା । ଓପାସରେ ତିନି ଦିନ ରହି ଇଷ୍ଟଦେବତାଙ୍କ ପାଖେ ଅଧିଆ ପଡ଼ିଲି – ଇଷ୍ଟଦେବତାଙ୍କ ମୁଣ୍ଡରୁ ଫୁଲ ଖସିଲା ।

ଦିନେ ପଡ଼ିବା କାଟିବ ବୋଲି ପନିକ ଥୋଇଲି । ମନ କଅଣ ହେଲା । ସେଇଠି କାନ ପକାଇ ଶୋଇପଡ଼ିଲି । ଏତିକିବେଳେ ସ୍ୱର ଶୁଭିଲା—

'କାହାର ଯୁବତୀ ତୁ ଶୋଇଚୁ ତଳେ
ଚହ୍ନି ନ ପାରି ତୋର ପଶୁଚି ଘରେ ।'

ତାପରେ ଧଡ଼ପଡ଼ ହୋଇ ଉଠି ଗୋଡ଼ ତଳେ ପଡ଼ିଲି, ତାଙ୍କେ ପାଣି ନେଇ ଗୋଡ଼ ଧୋଇଲି । ସେହି ଦିନ ଆଶୀର୍ବାଦଘର ହେଲା । ମୋ ମାଉସୀ କହିଲା—

'ପାଞ୍ଚଟି ବାହ୍ମଣ ଗୋ କଲ୍ୟାଣ କର
ଛେଉଣ୍ଡା ଛେଉଣ୍ଡୀ ସେ କରନ୍ତୁ ଘର ।'

ତା ପାଖ ଘର ଚେମଣି ବୋଉର; ପୁରୁଷ ମାଲିକ ଥିଲେ ବି ତା ଆଗରେ ମୂଷା, ଚେମଣି ବୋଉର ସ୍ୱର ମାଇକ୍‌ରେ କହିଲା ପରି କଥା କହିବାର ତିନି ଗୁଣରୁ ଅଧିକ ଶବ୍ଦ କରି ବାଜେ । ଘର ବାହାର କମ୍ପୁଥାଏ । ଏବେ ଦାଣ୍ଡ ଓଳାଇଲା ବେଳେ ପାହାଡ଼ ଆକାରର ଧୂଳି ଉଠୁଥିଲା, କୁହୁଡ଼ି ପରି ଖଣ୍ଡ ମଣ୍ଡଳକୁ ଘୋଟିଥିଲା । କାହାର ସମ୍ପତ୍ତି ଉଡ଼ାଉଥିଲା ସେ ?

Digitized by srujanika@gmail.com

ମିଛୁ କହିଲା—ସମୁଦ୍ର, ଏ ଚେମେଣି ବୋଉକୁ ଦେଖୁଚ ? ଏ କାଳେ ବି ସେ ଗୋଡ଼ରୁ ମୁଣ୍ଡ ଯାଏ ଅଳଙ୍କାର ପିନ୍ଧିଚ—ନୋଥ, ଗୁଣା, ବଣଣି, ପାଉଜି; ଅଣ୍ଟାସୂତା, ଅନନ୍ତବ୍ରତ ।

ମନ ମାନିଥିଲେ ସେ ସେକ୍ଷଣି ମଇଳା କାଢିବ; କୋଉ ଆକାଶକୁ ବୋଲି ଟେକିଦବ, ଆଉ କ୍ଷଣକୁ ଟିକିଏ କଣ୍ ବିଗିଡ଼ିଗଲେ କୁଳ ବୁଡ଼େଇଦବ ।

ସେ କ୍ଷଣେ ପାନପିକ ଗଳି ପଡ଼ୁଥିବ, ଘଇତା ସଙ୍ଗେ ପ୍ରେମ ବି ବୋହି ପଡ଼ୁଥିବ, ପାନଖିଆ ଦାନ୍ତ ଦେଖାଇ କରକର ହସୁଥିବ, ଆଉ କ୍ଷଣକୁ ଝିଙ୍ଗାପିଙ୍ଗା କଳି ଲଗାଇ ବସିବ; ଚେମଣି ବୋଉର ପୃଥୀ କ୍ଷଣ-କ୍ଷଣକେ ଆନ । ଘଇତା କରପତ୍ର ଯୋଡ଼ିଥାଏ । ସେ ମାଇଗୁଲିଆ ଟଙ୍କେଇ ସାହୁ ନୁହେଁ । କିନ୍ତୁ ମାଇପ ଭୁଣ୍ଡିକୁ ତାର ଭାରି ଡର; ସେତିକ ଜଗିଦେଲେ ସଂସାର ଠିକ୍ ଚାଲେ । ହେଲେ ଭୁଣ୍ଡି ସମ୍ଭାଳି ସବୁଦିନେ ରହିହୁଏ କୋଉଠି ?

ଦିନେ କୋଉ କଥାରେ ଘଇତା ସଙ୍ଗେ କଣ ଟିକେ ଖିଚ୍ ଖିଚ୍ ଲାଗିଗଲା । ସେତିକରେ ଚେମଣି ବୋଉ ଚୁଲରେ ଦଉଡ଼ି ଲଗାଇଦେଲା । ଚେମଣି ଯାଇଥିଲା ଇସ୍କୁଲକୁ । ତା ବାପ ଫେରିଲାବେଳକୁ ଘରେ ଗଁ ଗଁ ଶୁଭୁଚ । 'ଆରେ ମୋ କଥା ସରିଗଲାରେ' କହି ସେ ନିଶୁଣି ଲଗାଇ ଦାଆରେ ଦଉଡ଼ିଟା କାଟି ଦେଲା; ତାପରେ ମଶିଣାରେ ଶୋଇ ଦେଇ ଛୁଆଁବାଆଁ କଲା । କେମିତି ଶବଦ ହେଲା କେଜାଣି, ସାଇ ମାଇପେ ମାଡ଼ି ଅଇଲେ ।

ବହୁତ ହେପାଜତ ପରେ କେତେବେଳକେ ଚେମଣିବୋଉର ଚେତା ହେଲା, ଆଖି ଫିଟାଇ ଚାହିଁଲାବେଳକୁ ସେ ଘରେ ଘରେ ଲୋକ । ଭାରି ଗୁମାନୀ ସେ, ତା ଦିହଟା ରାଗରେ ଜଳିଗଲା—ଆମ ଘରେ ଆମେ କଳି ଲଗାଇଲୁ କି ଯାହା କଲୁ, ଏଗୁଡ଼ାକ ସବୁ କିଏ ? ମୁଁ ମରୁଚ ବୋଲି ମତେ ଦେଖିବାକୁ ଆସିଛନ୍ତି ! ଆମ ଘର କଳି ଛଡ଼େଇବାକୁ ଆସିଛନ୍ତି ! ସେ ବସିପଡ଼ି ମୁହଁ ଫୁଲାଇ ଗର୍ଜି ଉଠିଲା—

Digitized by srujanika@gmail.com

'ମୋ ଘଇତା ତ ମତେ ମାଇଲା
ଗାଁରେ କାହାଁକ ହୁର ପଡ଼ଲା ?
ତୁମେ ଗଣ୍ଡ ଆଣ୍ଠୁ କୁଡ଼ୀଏ
ପୁତ୍ରୁଖାଇଏ
ନଅଁଶୀଏ
ଅଇଲ ଧାଇଁ ?
ତୁମ ଘରେ କଳକଜଆ ନାଇଁ ?'

ଯାହାକୁ ଏତେ ଛୁଆବଞ୍ଚା କର ବଞ୍ଚେଇଲେ, ତା ମୁହଁରୁ ଓଲଟି ଏ ଇଙ୍କତସବୁ ଗାଳ ଶୁଣି ସେ ଯୁଅଡ଼େ କଚ୍ଛୁ ନ ଜାଣିଲା ପର ଖସିଗଲେ । କଳକାଣ୍ଡୋଇ କୁସୁନଆଁ ମାଇପର ଜଣେ ଅସଲ ଯୋଡ଼ ଗୃଳଯାଉ- ଥିବାରୁ ଯୋଉମାନେ ବଢା ଦବାକୁ ଆସିଥିଲେ, ସେମାନେ ଦାହରେ ମୁଣ୍ଡରେ ଯାହା ପାଇଲେ, ସେଥିରେ ମନ ବୋଧ ହୋଇ ଯାଇଥିଲା ।

ତା ପାଖ ଘର କଥା ସମୁଦାକ କହିବାକୁ ହେଲା ନାହିଁ । ଆମକୁ ଦୁଆରେ ଠିଆ ହେବା ଦେଖି ସଖୀ ବୋଉ ଘରୁ ବାହାରି ଆସି ଓଢ଼ଣାକୁ ଟାଣି ଦେଇ ପଗ୍ଚରିଲା – ମିଛୁ ମଉସା, ମୋ ସ୍ୱାମୀକୁ ଦେଖିଚ କ ? ପନ୍ଦର ଦିନ ହେଲା ଯାଇଛୁ ଯେ ଯାଇଛୁ । ମୁଁ ମାଇପୀ ଲୋକ, କୁଆଡ଼େ ଯାଇ ଅବା ଖୋଜିବ ?

ମିଛୁ – ତାକୁ କଣ କହିଲ କ ?

ସଖୀବୋଉ—ମୁଁ କାଇଁକ କଣ କହିବ ? କହିଲେ କଏ ବା ଶୁଣୁଚ ? ପଦେ ଆକଟି କହିବାକୁ ଘରେ କଏ ଅଛୁ ?

ସେ ତ ବୁଢ଼ା ଦିନେ ସ୍ୱର୍ଗ ହେଲେ, ମୋ ଭାଇକ କୁଆଡ଼େ ତିନଶ ଟଙ୍କା ଦେଇ ମତେ କଣି ଆଣିଥିଲେ । ଏ ସାଇରେ ମୁଁ ମୁଣ୍ଡ ଟେକ ଗୃଲପାରେ ନାହିଁ, କାଳେ କଏ ଉଦେଇ ଦବ, ମନରେ ଶଙ୍କା !

ମତେ ଯେ ଛେଳ, ମେଣ୍ଢା ପର ବିକଛନ୍ତି, ସେ କ ବାପଘର ? ସେଠିକ ଆଉ କୋଉ ମୁହଁରେ ଯିବ ? ମୋ ବାଟ ପଡ଼ଗଲା; ମନର ବଳ ଭାଙ୍ଗିଗଲା ।

Digitized by srujanika@gmail.com

ବାହାଘରର ଦଶ ବର୍ଷ ପୂରିଛି କି ନାହିଁ, ସେ ସେପୁରକୁ ବାଟ କାଟିଲେ । ଛୁଆ ତିନିଟାଙ୍କୁ ଘୋଷାରି ଘୋଷାରି ସେଇ ଦିନୁଁ ମୋ ଦିନ ସରୁନାହିଁ ।

ଘରେ ଯାହା ଥିଲା ବିକି ଭାଙ୍ଗି ଦେଲାରୁ ସଖୀ ଲାଗି ଜୋଇଁଟିଏ ମିଳିଲା । ସଖୀ ପରି ଝିଅକୁ କଣ ସେ ବର ? ଅରଣା ମଇଁଷି ପରି ଚେହେରା, ଅପାଳ ଯଉଁଶଟିଏ । ତିନି ମାଣ ମାଦ ଜମି, ହାତ ଗୃହ କରେନାଇଁ; ଭାଗଧାନ ଯାହା ମିଳେ, ସେଇଥିରୁ ଖିଆପିଆ, ତେଲ ଲୁଣ, ଲୁଗାପଟା କଣା । ଦେଖୁନ, ମୋ ସଖୀ ଦିହରୁ କେମିତି କଳା ପାଣି ବୋହି ଯାଉଚି ! ତାର ଅବସ୍ଥା ଅଛି ?

ସେଥିରେ ତିନି ଝିଅ; ଯେତେ ଠାକୁରଙ୍କୁ ମନାସିଲି, କିଛି ନାହିଁ । ପୁଣି ହେଲା ଗୋଟେ ଝିଅ !

ମଉସା, ମୋ ବଡ଼ ପୁଅ ଗବିନ ବଡ଼ ଅର୍‌ଦୋଳିଆ ବଢ଼ୁଚି; କେତେ କେତେ ନିଶା ଶିଖି ଏବେ ଗଞ୍ଜେଇରେ ମୁକରର୍ ହୋଇଚି । ଗଲା ବର୍ଷ ରାମକୁ ମାରି ମାରି ଛ' ମାସ କତରାଲଗା କରିଥିଲା ।

ସେ ଉଠି ଚୁଲବୁଲ କଲା ପରେ ମୋ ପିଣ୍ଡରେ ପ୍ରାଣ ପଶିଲା; ଏବେ କଥା ହଉଁ ହଉଁ ପୁଣି ଚଡ଼େଇଲା ମାଡ଼ ଯେ ରାମ ଘର ଛାଡ଼ି ପଳେଇ ଗଲା ।

ଏ ଗୁଣ୍ଡା ଅକର୍ମାକୁ କିଏ ଝିଅ ଦବ ? ବାଇ ହେଲେ କେଜାଣି ମନ ତାର ସଂସାର ଧରନ୍ତା !

ଗାଁରେ କେତେ କାହାକୁ କହିଲି—ବାପ ଛେଉଣ୍ଡ ପିଲାଟା, ତାକୁ ଟିକିଏ ଆକଟ କରି ବାଟକୁ ଆଣ । ଏ ରାଣ୍ଡି କଥା କେହି କାନକୁ ନେଲେ ନାହିଁ । ଏବେ କାହାର ଚୋରି କଲା, କାହା ପିଲାକୁ ମାରିଲା, ମତେ କହିଲେ ମୁଁ କଣ କରିବି ?

ମଉସା, ମୋ ରାମକୁ ଟିକିଏ ଖୋଜି ଆଣି ଦବ ? ମୋ ଛାତି ଫାଟିଗଲା ପରି ଲାଗୁଚି ।

Digitized by srujanika@gmail.com

ବୁଝିଲ ସମୁଦ୍ର, ଏ ବଖୁରିକ ଘର ନୁଖୁଣ୍ଟୁ ବୋଉର । ବାଡ଼ରେ ସଜନା ଗଛଟିଏ, ଶାଗ ଗୃହ ପଟାଳି, ବାଡ଼ରେ ଦୂରେଇ ହୋଇ ବାଉଁଶ ବୁଦାଟିଏ, ଦାଣ୍ଡରେ ଦୁ'ଗଛ ନଡ଼ିଆ । ଢନ ଝିଅ ବାହା ହୋଇ ଯେଝା ଘରେ । ଗୋଟାଏ ତ ପେଟ; ବେଶୀ ଧନ୍ଦା ହବାକୁ ପଡ଼େ ନାହିଁ ।

କେହି ସାହା ଭରସା ନାହିଁ । ତଥାପି କାହାର 'ରେ' ପଦ ସେ ସହେନାହିଁ । ପରଶଂସି କହିଲେ ଗୋହିରା ଗୋଟାଏ, ତେଢ଼ି କହିଲେ ଏଡ଼ି ରହେ । ଆଉ ଦୁଆର ମାଡ଼େନାହିଁ । ଅସମୟ ଅବଶ୍ୟ ପଡ଼େ । ଘରଣୀ ହାଣ୍ଡି ନ ଛୁଇଁବ ତ ପୁଞ୍ଜେ ସେବେଇ କରିଦବ କିଏ ? ଛୁତକଥା କ ମୃତକଥା ହବ ତ ଢଅଙ୍କୁ ପାଣି ଦବ କିଏ ? ଚତଉ ଅମାବସ୍ୟା, ଚତଉ ପିଠା ହବ; ଗହ୍ମା ପୁନଅଁ; ଇଣ୍ଡୁରି ପିଠା ହବ; ପିଠଉ ବାଣ୍ଟି ଦବ କିଏ ? ନୁଖୁଣ୍ଟୁ ବୋଉକୁ ଡାକ, ଡାକ । ତା ଦୁଆରେ ଯାଇ ସକାଳୁ ଅଧିଆ ପଡ଼ିବାକୁ ହବ । କାହା ହାତରେ ଖବର ଦେଲେ ନୁଖୁଣ୍ଟୁ ବୋଉ ମୁହଁ ମୋଡ଼େ; ଗୋଡ଼ ଲମ୍ବାଏ ।

ଏମିତି ସେ ପଣ୍ଡିଆଣୀ । ସ୍ୱାମୀ ସେ ପୁରକୁ ଗଲା ପରେ କୋଠ ଢଅଁ ସେବା ଗଲା; ସେ ବାବତ ଢଅଁଙ୍କ ହେତା ଜମି ବି ହରାଇବାକୁ ହେଲା । ଏବେ ଆଶ୍ରା ଗୃହ ବାହା; ଖଟି ଖାଇବ, ନଇଲେ ମରିବ ।

ଗାଁରେ ବହୁ ଗଣ୍ଡୀ ଖଣ୍ଡୀଙ୍କର ତିଙ୍କି ଭରସା । ତିଙ୍କି ଗୃହଅରେ ଧାଇଁକି ଧପଡ଼, ଧାଇଁକି ଧପଡ଼ କରି କୋଡ଼ିକେ ସେରେ, ଛେଦା ଛେନ୍ଦି ଖୁଦ କଣ୍ଟୁ ମିଳେ, ଠିଁକ ଚଳେ । କିଏ ଧାନ ଉସେଇଁ ନ ପାରିଲେ ନୁଖୁଣ୍ଟୁ ବୋଉ ଦୁଆରେ କୁଟା ପକାଏ । ଏବେ କଳ ଅଇଲାକୁ ଧାନ-କୁଟା ଧନ୍ଦା ବୁଡ଼ିଲା । ନୁଖୁଣ୍ଟୁ ବୋଉ ଗୃହଣି ଠିଙ୍କା ସରକାରି ପେନସନ୍ ପାଏ । କାହା ଘର ଆଉଟ ପତର କରିବାକୁ ଦେହରେ ଆଉ ବଳ ନାହିଁ । ବୁଟ ଭଜା ପୁଞ୍ଜିଏ ଧରି ଇସ୍କୁଲ ଦୁଆରେ ବସେ । ଏମିତି ଚଳେ ।

Digitized by srujanika@gmail.com

କେତେ କାହା ଦୁଆରେ ଖଟି ବଳବୟସ ଝଡ଼େଇ ଥିଲି । ଏବେ ଲୋକେ ସମୟ ଅସମୟ ଚଳାନ୍ତି । ବେଗବଇରାଗରେ ଆସି ଦୁଆରେ ଛିଡ଼ା ହୁଅନ୍ତି ।

ପଚାରିଲି—ନୁଖୁରୀ ବୋଉ, ଏବେ କେମିତି ଅଛ ? ନୁଖୁରୀ ବୋଉ କହିଲା—ମୁଁ କେମିତି ଅଛି, ଯେ ଦିନ ରାତି କରୁଚି, ସଂସାର ଚକ ଚଳାଉଚି, ତାକୁ ଗୋଚର । ମତେ କୋଡ଼ିଏ ବରଷ ପୂରିଥିଲା କି ନାହିଁ, ସେ ସେ ପୁରକୁ ଗଲେ । ସଜ ମାଉଁସରେ ପୋକ ପକେଇବା ଲୋକ ତ ଏ ଗାଁରେ ଯେତେ ନାହିଁ ସେତେ । କାହା କଥାକୁ ନ କାନେଇ ମୁଁ ନଇଁ ନଇଁ ଓଢ଼ଣା ପକେଇ ଯାଆସ କରେ ।

ଏ ଗାଁରେ ଯିଏ ବଡ଼ିଘରେ ସେ, ତା ବଡ଼ିଘରେ ଯିଏ ବଗିର ପକାନ୍ତି । ମୁଁ ସବୁ ଶୁଣେ, କାହା କଥା କାହାକୁ କହେନାହିଁ । ମୁଁ ଜାଣେ, ମୁଁ ତୁଣ୍ଡ ଖୋଲିଲେ ନିଆଁ ଲାଗିଯିବ । ହୁଏତ କାହାର କିଛି ହବନାହିଁ, ମୁଁ ଅଭାଗିନୀ ପୋଡ଼ି ହୋଇ ମରିବି । ମୋର ତ ସମସ୍ତେ ନିଜର, ମୁଁ ସମସ୍ତଙ୍କ ପାଖେ ଚଳିବି । ତୁଣ୍ଡ ଖୋଲିଲେ ମୁଣ୍ଡ ରହିବ କୋଉଠି ? ମୋ ପିଠିରେ କିଏ ପଡ଼ିବ ?

ନ ଖଟିଲେ କିଏ କାହାକୁ କାହିଁକି ସେରେ କି ପାଏ ଦବ ? ମୋ ହାତ କେବେ ଥିର ହୁଏନାହିଁ, ବାବୁ । ବସିବା ମୋ ଦେହ ହୁଏ ନାହିଁ ।

ଆଉ କି ସୁଖ ଭୋଗିବାକୁ ଭଗବାନ୍ ମତେ ସଂସାରରେ ରଖିଛନ୍ତି ? ଗୋଡ଼ ବାହା ସୁସ୍ଥ ଥାଉଁ ଥାଉଁ ଗଲେ ଭଲ । ଏମିତି ଲୋକେ ମୁହଁରେ ସିନା ପଚରାଉଚରା କରୁଛନ୍ତି । ବେଗରେ ଘାଣ୍ଟି ହେଲେ କିଏ ମୋର କରିବ ?

ତାପରେ ମେହେନ୍ତ୍ରୀ ଘର; ତା ଘର ମଣିଷ କିଏ କେବେ ଥିଲା ପଡ଼ୋଶୀଙ୍କି ଅଗୋଚର । ଘରେ ମାଆ, ଝିଅ । ମାଆର ଅସଲ ନାମ ହଜି ଯାଇଚି; ଏବେ ମେହେନ୍ତ୍ରୀ ନାମ ପ୍ରଘଟ । ଗ୍ରମାୟଣରେ ମନ୍ଥରା, ଗ୍ରାମାୟଣରେ ମେହେନ୍ତ୍ରୀ ।

Digitized by srujanika@gmail.com

ଫୁଲ ଓଳରେ ଓଳଏ ଘଷେ । ବାଡ଼ରେ ଶାଗ ପଖାଳ । ଶାଗ ପଖାଳ ପୁଞ୍ଜିଏ ଖାଇଦେଇ ସେ ସାଇକ ସାଇ ଚହଲ ମାରୁଥାଏ । ବାରବୁଲି ସେ, ତେର ପଦାଡ଼ୀ—ଏ ଘର ମାଉସୀ, ସେ ଘର ପିଉସୀ ।

•

ଘର କଅଁଳକଥା; ମଉନମୁହାଁ । ପାଣିରେ ସର ପକାଇ କଥା କହେ, ଗୋଟାପଣେ ନଜର ହୋଇଯାଏ । ସବୁଠି ବିଶ୍ୱାସର ପାତ୍ରୀ, କୋଉଠି ଖଞ୍ଜାରେ ନଆଁ ଟିକେ ଗୁଞ୍ଜିଦେଇ ଆସେ । କୁହୁଳି କୁହୁଳି କେତେ ଦିନ ପରେ ସେ ଜଳେ । ଘରଟା ନାଚେ, ସାଇଟା ପଡ଼େ ଉଠେ । ମେଣ୍ଟେଡ଼ୀ ଆଉ ଧଗଚ୍ଛୁଆଁ ନ ଦିଏ । କିଛି ନ ଜାଣିଲି ପରି ରହେ । ଏମିତି ଗାଁରେ କେତେ କେତେ ନାଟକର ଜନ୍ମ ହୁଏ ।

ସେ ବେଶୀ କଳକାଣ୍ଡେଇ ପାଲଟିଲି ନିଜ ବାଡ଼ର ଖଣ୍ଡେ ଘାସଣା ପଡ଼ିଆ ଲାଗି ।

ପୋଖରୀ ଆଖପାଖର ପଡ଼ିଆ ବାଡ଼ ତ ଗାଁର ପାଇଖାନା । ରାତି କଣେ ନ ପାଉଣୁ କେତେ ସୁବିଧାବାଦୀ ପଡ଼ୋଶୀ ଯାଇ ସେଠି କାମ ସାରି ଦେଇ ଆସନ୍ତି । ଶୁଖିଲି ପତ୍ରର ଉପରେ ଚାଲିବା ଶବଦ ଶୁଣି ବୁଢ଼ୀର ଭୁରୁ ଖୋଲେ; ଆଖି ପଡ଼ିଲେ କାଳେ ମୁହାଁସ ଆସିଯିବ, ଏଥି ଲାଗି ଆଖି ବୁଜି ସେ ସପ୍ତ ପୁରୁଷ ଉଦ୍ଧାର କରି ଚାଲେ ।

ଦିନେ ମଜା ଦେଖିବା ଲାଗି କି କଣ, ପଡ଼ଶାରୁ ଜଣେ ସେ ପଡ଼ିଆ ବାଡ଼ ଦେଖାଇ ଦେଲି । ବୁଢ଼ୀର ଠିକ୍ ନଜର ପଡ଼ିଛି କି ନାହିଁ କେଜାଣି, ସେ ଅଭ୍ୟାସମତେ ଶୋଧି ଚାଲିଲି । ଦୈବାତ୍ ଆଖି ଖୋଲି ହୋଇଯିବା ମାତ୍ରେ ସେ ଦେଖିଲି—'ପୁଲସ୍ ।' ତା ଦିହରୁ ଗୋଟେ ନିଆଁ ଖସି ପଡ଼ିଲି । ଚାଖଣ୍ଡେ ଜିଭ କାଢ଼ି ପକାଇ ଅତି କଅଁଳ ସ୍ୱରରେ ସେ କହିଲି—ମିଆଁ ପୁଅ କି ? ହଗ, ହଗ !

ନାଟର ନାରଦ କିଏ ? ଲୋକେ ଖୋଜ ଖୋଜ ଯାଇ ତା'ରି ପାଖରେ ପହଞ୍ଚନ୍ତି । ତାକୁ ଡର; ସାଇ ମନା ହୁଏ ।

Digitized by srujanika@gmail.com

କଥାଟା ଗଡ଼ିଆ ଭୁଠରେ ମାଇପୀ ମହଲରେ ନଆଁଅ ହୁଏ। ସେ ଧରିଛୁଆଁ ଦିଏ ନାହିଁ। ଦୋଷଟା ତା ଆଡ଼କୁ ଗଡ଼ ଗଡ଼ ଗଲେ ସେ ଆଖିରୁ ଲୁହ ଗଡ଼େଇ କହେ—ମୋର କେହି ନାହିଁ ବୋଲି ମତେ ନୁଆଁଣିଆ ଦେଖୁଛ ! ଠାଉ ଠାଉ କରି କହି ଗୁଳିଚ । ତାପରେ କାନରେ ଗଣ୍ଠି ପକାଇ କହେ—ମୁଁ ଯଦି ଆଉ ସେ ପାଇକ ଯାଏ, ମୁଁ ବଙ୍କୁ ମକଦ୍ଦମଙ୍କର ଝିଅ ନୁହେଁ, କେମ୍ଭେଇ ହାଡ଼ିଆଣୀର ଝିଅ !

ସମୟ ପୁଣି ସବୁ ସହଜ କରିଦିଏ। ଲୋକେ ପୁରୁଣା କଳି ଭୁଲିଯାନ୍ତି। ସବୁ ଆଡ଼କୁ ମେନ୍ଟେଢ଼ୀର ବାଟ ଖୋଲିଯାଏ।

ଯୋଉ ନଷ୍ଟୁରି ରାଣ୍ଡୀ ବାହ୍ମଣୀ କଥା ମୋର ମନେ ପଡ଼େ, ଏ ସେହି। ସଂସାରରେ କାହାର ସୁଖଶିରୀ ସେ ସହିପାରେ ନାହିଁ । ଗେଲ-ବସରୀ ତଅପୋଇର ଭାଉଜମାନଙ୍କ କାନରେ ଏମିତି ଜଣେ ତରଳ ବିଷ ଢାଳି ଦେଇଥିଲି। ଯୋଉ ଝିଅ ଦିନେ ଭାଇଭାଉଜଙ୍କ ସ୍ନେହ ଲାଗି ସୁନା ଦୋଳିରେ ଦୋଳୁଥିଲା, ସୁନା କୁଲେଇରେ ଖେଳୁଥିଲା, ସୁନା ଗୁନ୍ଦ ଗଡ଼େଇବା ଲାଗି ଜିଦ୍ ଧରି ବସିଥିଲା, ତାକୁ ଅଗନାଗିନ୍ ବନସ୍ତରେ ଖରା କାକରରେ ଓପାସଭୋକରେ ଛେଳି ଚରାଇବାକୁ ହେଲା। 'ଘରମଣି' ଛେଳି ହଜାଇ ବହୁ ତାଡ଼ନା ଓ ଧିକ୍‌କାର ବଚନ ସହିବାକୁ ହୋଇଥିଲା, ଏଡ଼େ ଅଳ୍ପଲୀ, ସୁକୁମାରୀ, ସୁନ୍ଦରୀ ଝିଅଟିର ଗଳଗ୍ରହ ସ୍ୱରୂପ ହୋଇଥିଲା ଏଇ କି ଏମିତି ଜଣେ।

ଯେତେ ଆଳ, ଛଳ ସବୁ ତାକୁ ଜଣା। ମନରେ ଯେତେ ଅଳିଆ ଆବର୍ଜନା ଜମିଥାଏ, ସୁଯୋଗ ପାଇଲେ ତା'ରି ଆଗରେ ଖାଲାସ କରନ୍ତି ବୋହୂମାନେ । ତାକୁ ପଣ୍ୟ କରି ମେନ୍ଟେଢ଼ୀର ବେଉସା ଚଳେ।

କଥା କହିଲାବେଳେ ସେ ଯେତେ ଭେଙ୍ଗିଗୁଡ଼ରେ ମୁହଁ କରେ, ଦେଖିବାର କଥା । ଆଖି ଦିଟା ତାର ଘିରି ଘିରି ବୁଲୁଥାଏ, ଜିଭଟା ତାର ନାଚ କରୁଥାଏ।

Digitized by srujanika@gmail.com

ଗଣ୍ଡ ହେଲେ ବି ତାର ଆଇଁଷରେ ମନ । ପୋଷା ବିରାଡ଼ି ନାଆଁରେ ସେଇଟା ଚଳେ । କଥା ଅଛି—

'ପୁଅ ନାଆଁରେ ପୁଅ ଶାଖାଏ
ବାନ୍ଝୀ ମାଇକିନା ଅନାଇ ଥାଏ ।'

ଚଉଁରୀ—ମେହେନ୍ତେଡ଼ୀର ଏଇ ଗୋଟିଏ ବୋଲ ଝିଅ । ଶାସନରେ ଯାଠୋଇ ବୋଇଲେ ସେଇ । ଠିକ ଠିକ ହସେ, ଅଣ୍ଟିରିଙ୍କ ପରି ଉଗଉଗ ଚୃଲେ । ତେବେ ମାଆ ପରି କଳଲଗେଇ ନୁହେଁ ।

ବଡ଼ ହୋଇ ବି ସାରାଜୀବନ ଅବିବାହିତ ରହିଗଲା ସେ । ବରଟି ଅଢ଼େଇ ହାତର କଣ୍ଢେଇଟିଏ; ନିପଟ କଳା, ଅକର୍ମଣ୍ୟ । ବାଟକୁ ଯାଇ ସେ କେମିତି ପେଟ ପୋଷୁଥିଲା, ମା ଗଙ୍ଗେଙ୍କୁ ଜଣା । ଚଉଁରୀ ମାଷ୍ଟାଣୀ ହବାପରେ ଦିନେ ସେ ଅତି କରୁଣ ରୂପରେ ପିଣ୍ଡା ତଳେ ଉଭା ହେଲା । ମେହେନ୍ତେଡ଼ୀ ଜୋଇଁର ମର୍ଯ୍ୟାଦା କରିବା ତ ଦୂରର କଥା, ପାହାଚ ଉଠେଇ ଦେଲା ନାହିଁ, କହିଲା—ଯା, ଯା; ଏଠିକି ଆସିଚୁ ବସି ଭୋଜନ ପକେଇବୁ ? ମୋ ଝିଅ ତତେ ପୋଷିବ ? ଯା-ଯା, ଘର୍ ଏଠୁଁ । ଆଉ ଦିନେ ଯଦି ଏଠି ମୁହଁ ଦେଖେଇବୁ, ଫେର୍ ଦେଖିବୁ । ଶାଶୁର ଝିଙ୍ଗାସ ବଚନ ସହି ନ ପାରି 'ଚହଟା' ଗଲା ଯେ ଗଲା ।

ବାର ବର୍ଷ ପୂରିଲା ପରେ ଗାଁବାଲା ଅଡ଼ି ବସିଲେ । ଚଉଁରୀକୁ ପଲଗପଣ ତାହା ଓ ଶୁଦ୍ଧିଶ୍ରାଦ୍ଧ କରିବାକୁ ହେଲା । କିନ୍ତୁ ସେ ଗଣ୍ଡ ହେଲା ନାହିଁ । କହିଲା—ମୋ ମନ ଘାଣ୍ଟି ହୁଅନ୍ତା, ହଉନାହିଁ । ମୋ ସ୍ୱାମୀ କେଉଁ ମରିନାହାନ୍ତି । ବୋଉ କଣ ପଦେ କହି ଦବାରୁ ଅଭିମାନରେ ଆସୁନାହାନ୍ତି । ଚଉଁରୀ ଦିଅଙ୍କୁ ଶହେ ଟଙ୍କା ଜରିମାନା ଦେଲା, ମୁଣ୍ଡିଆ ମାରି କହିଲା—ଅପ୍ରାଧ ହୋଇଥିଲେ କ୍ଷମା କର । ଅହ୍ୟରାଣୀ ପରି ସେ ଜୀବନସାରା କାଚ, ଖଡ଼ୁ ପିନ୍ଧି ରହିଲା, ଅଲତା ସିନ୍ଦୂର ଭେନିଲା । ବିବୃଷ୍ୟ ଦୁଃଖରୁ ଶାନ୍ତି ପାଇଲା । ଅଥଚ ସ୍ୱାମୀ ତାର ଫେରିଲା ନାହିଁ ।

Digitized by srujanika@gmail.com

ଚଉଁଶୀର ବଦଳି ହେଲା ଶିଶୁପୁର । ସେଠା ବଡ଼ ମାଷ୍ଟ୍ରଙ୍କ ଘରଯା ମରିଗଲା; ପୁଅଟିଏ । ଦିହେଁ ସ୍ୱାମୀ ସ୍ତ୍ରୀ ହୋଇ ଚଳିଲେ । ଲୋକଙ୍କ ମୁହଁରେ କିଏ ହାତ ଦବ ? ଲୋକଲଜ୍ଜାରୁ ଚଉଁଶୀ ବାବୁଙ୍କୁ କହି ନିଜକୁ ବଦଳି କରିନେଲା କାଶୀପୁର । ଏ ମଧ୍ୟରେ ବଡ଼ ମାଷ୍ଟ୍ରଙ୍କ ଆଗ ଘରଯାର ଶାଢ଼ୀ, ଅଳଙ୍କାରତକ ହାତକୁ ଆସି ଯାଇଥିଲା । ବଡ଼ ମାଷ୍ଟ୍ରେ ପୁଅଟିକ ତା ସାଥିରେ ପଠାଇଦେଇ କହିଲେ — ଯାକୁ ପାଳି ମଣିଷ କର । ଚଉଁଶୀ ପିଲା ଛୁଆ ନ ଥିଲା । ସେ ତାକୁ ପୁଅର ଗୋଟିଏ ସ୍ଥାନରେ ବସାଇ ଦେଇ ଖସିଗଲେ । ଆଉ ଧରିଛୁଆଁ ଦେଲାନାହିଁ ।

ଦିନେ ବଡ଼ ମାଷ୍ଟ୍ରେ ପୁଅ ଓ ରକ୍ଷିତାକୁ ଦେଖି ଆସିଲେ । ମାଷ୍ଟ୍ରେ ଦାଣ୍ଡ ବାଟେ ଆସିଲେ ଚଉଁଶୀ ବାଡ଼ିବାଟେ ଖସିଯାଏ । ଘରଯା ମଲା; ପୁଅର ପତ୍ତା ମିଳିଲା ନାହିଁ । ମାଷ୍ଟ୍ରେ ଏ ଦୁଃଖ କାହା ଆଗେ କହିବେ ? ଦୁଶ୍ଚିନ୍ତାଚକ୍ରରେ ପଡି ଅଳ୍ପ ଦିନ ପରେ ତାଙ୍କର ମୃତ୍ୟୁ ହେଲା । ଏବେ ଚଉଁଶୀର ଭାବନା ପଡ଼ିଚି — ଏତେ ସମ୍ପତ୍ତି କିଏ ଭୋଗ କରିବ ? ମେନ୍ଦ୍ରେଡ଼ୀ ଗରଜି କହୁଚି — କାହିଁକି ସେଥିରୁ ଗୋଟେ ଏତେ କାଳ ପୋଷିଥାନ୍ତୁ ? ଏବେ କାହାକୁ ପୋଷିଆଁ ପୁଅ କରିବା ନାଇଁକି ?

ମିଛକୁ ଭାବନା ପଡ଼ିଚି କାଇଁକି ? ଦାନା ପକାଇ ଦେଲେ କେତେ କୁଆ ଆସି ଜୁଟିବେ !

ସେ ଝୋଟମୁଣ୍ଡୀ ବୁଢ଼ୀ ଗୋଟେ ଅରଟ ପକାଇଛି । ବେଳେ ବେଳେ ସେଠା ଘୁଁ ଘୁଁ ହୋଇ ଗୁଲେ । ବାହାରକୁ ବାହାରିଲେ ପିଲେ ଚିଡ଼େଇ ପଚାରନ୍ତି—

'ଅରଟ ଘୁଁ ଘୁଁ ଲେ ବୁଢ଼ୀ ତୋ
ସୂତା ନଟେଇ କାହିଁ ?

ମେନ୍ଦ୍ରେଡ଼ୀ—ଜାଣିନାହିଁ କରେ କାଟେଇଖିଆ
ମୁଁ ନିତି ହାଟପାଳି ଯାଇ ।

Digitized by srujanika@gmail.com

ପିଲ୍ଏ—ନଣ ହାଟପାଳ ଯାଉ ଲୋ ବୁଢ଼ୀ
ତୋ କଉଡ଼ ବୁଜୁଳ କାହିଁ ?

ମେଣ୍ଟେଡ଼ୀ—ଜାଣିନାହିଁ କରେ କାଠେଇଖିଆ
ମୁଁ ନଣ ପାନ୍‌ଗୁଆ ଖାଇ ।

ପିଲ୍ଏ—ନଣ ପାନ୍‌ଗୁଆ ଖାଉ ଲୋ ବୁଢ଼ୀ
ତୋ ଦାନ୍ତ ପାଚେଇ ନାଇଁ ?

ମେଣ୍ଟେଡ଼ୀ—ଜାଣିନାହିଁ କରେ କାଠେଇଖିଆ
ମୁଁ ପାହାନ୍ତୀ ପଖାଳ ଖାଇ ।

ପିଲ୍ଏ—ପାହାନ୍ତୀ ପଖାଳ ଖାଉ ଲୋ ବୁଢ଼ୀ
ତୋ ପେଟ ଦଶଇ ନାହିଁ ?

ମେଣ୍ଟେଡ଼ୀ—ଜାଣିନାହିଁ କରେ କାଠେଇଖିଆ
ମୁଁ ନଣ ମଇଦାନ ଯାଇ ।

Digitized by srujanika@gmail.com

## ॥ ଗୁର ॥

ନାଗ ଆଭରଣ ହୋଇଲେ, ଜଟା ଆଭରଣ ହୋଇଲେ, ବିଭୂତି ଭୂଷଣ ହୋଇଲେ, ପାର୍ବତୀଙ୍କି କୋଳେ ଧଇଲେ, ବୃଷଭ ଆରୋହି ସଚରାଚର ବୁଲିଲେ, ହରିବୋଲ ପୁର ଯୋଡ଼ ବରଗଛ ଉପରେ ଯାନ ଅଟକାଇ ବିଶ୍ରାମ କରୁ କରୁ ବୋଇଲେ—ପାର୍ବତୀ, ଏ ହରିବୋଲ ପୁରେ ଯେତେ ଯେତେ ଜନ ଛନ୍ତି, ତା ଭିତରେ ଖେଙ୍କୁ ମିଶ୍ରିକୁ ବଳି ହାଂସିକୁଟିଆ, କୁଟିଳିଆ କେହି ନାହିଁ । କଥାକେ କଥାକେ ଖେଙ୍କି ଉଠୁଥିବାରୁ ଲୋକେ ଏଇ ନାମ ଦେଇଛନ୍ତି; ହସି ଉଠିଲେ ପାର୍ବତୀ, ତାପରେ ପୁଷ୍ପକନେ ଉଡ଼ିଯାଇ କଲେ ଦିଗ୍‌ବଳୟକୁ ଗତି ।

ସତରେ ଏ ଖେଙ୍କୁର ଅସଲ ନାମଟି ଗୋପ୍ୟ, ଖେଙ୍କି ଖେଙ୍କି ମୁହଁଟା ଏବେ ଖେଙ୍କିଲା ଭଙ୍ଗୀରେ ରହିଯାଇଛି ।

ସାତଭାଇୟାଙ୍କ ସାଙ୍ଗେ ଝଗଡ଼ା ଲାଗିଲେ ବୁଢ଼ା ମାଙ୍କଡ଼ (ମାଙ୍କଡ଼ ଦଳର ସର୍ଦ୍ଦାର—ଗୋଧ) ଏମିତି ଦାନ୍ତ ରଗଡେ, ଖେଙ୍କେ । ତା ଦାନ୍ତରଡ଼ି କେହି ସହିପାରନ୍ତି ନାହିଁ । ପ୍ରତିହିଂସାରେ ଦାନ୍ତ ରଗଡୁ ରଗଡୁ ତା ଦାନ୍ତଗୁଡ଼ାକ ଅକାଳେ ପଡ଼ିଗଲା ।

ତା ତୁଣ୍ଡରେ ବାଇଶି ନାହିଁ । ଯେତେ ଇଚ୍ଛା ସେତେ ଭଣ୍ଡ କଥା ଯେ କହେ, ତୁଣ୍ଡକୁ ନରକ କୁଣ୍ଡ କରିଥାଏ । ଆଁ କଲେ ଉତ୍‌କଟ ଗନ୍ଧ ବାହାରେ, ମଡ଼ ଖିଆ ଗଧିଆ ପାଟିରୁ ଯେପରି ।

କାନ୍ଥ, ବାଡ଼ ସୀମା ନେଇ ପଡ଼ୋଶୀଙ୍କ ସହିତ କଳି । ତା ତୁଣ୍ଡକୁ ଡର—ଏ କୋଳାଟା ସାଙ୍ଗେ କିଏ କଳି କରିବ ? ନିଜର ମାନ୍ ଯିବା ହିଁ ସାର ହବ, ଆଙ୍ଗୁଳେ ଗୃହଖଣ୍ଡ ନେଇ ବଡ଼ ଲୋକ ହୋଇଯିବି ତ ହେଇ ଯାଉ । ଏ ମନୋଭାବରେ ତାର ଜଡ଼ାପଟ ହୁଏ । ସେ ରଡ଼ି

Digitized by srujanika@gmail.com

-ଦେଇ ଜୟ ଘୋଷଣା କରୁ କରୁ କହେ—ମୋ ସାଙ୍ଗେ ଲଗିଲେ ମୁଁ କାହାକୁ ଛାଡ଼ିଦେବ ନାହିଁ, ଗୋଟାପଣେ ଖାଇଯିବ !

ଇଙ୍ଗିତସବୁ ଗାଳି ଦେଇ ବିପକ୍ଷକୁ କ୍ଷତବିକ୍ଷତ କରିବା ତାର ନିତ୍ୟନୈମିତ୍ତିକ କାମ । ଗାଳିର ଜବାବ୍ ଦେଲେ ପଠ୍ କରି ହାତ ଲଗାଇ ଦିଏ । ତାର ଜବାବ୍ ଦେଲେ କଣ୍ଟିଆ ବାହାର କରେ । ଏ ଖଣ୍ଡିଆର ମୁହାଁମୁହିଁ କେହି ହୁଅନ୍ତି ନାହିଁ ।

ବଙ୍କୁ ଖେଙ୍କୁ ଦି ଜଣ ନଶାଚର । ପୋଖରୀର ମାଛଠୁଁ ବାଡ଼ିର କଦଳୀ କାନ୍ଧି ପର୍ଯ୍ୟନ୍ତ ସବୁଥିରେ ଏ ଦିଜଣଙ୍କ ଲୁଣ୍ଠିଛଣା ହାତ ବାଜେ । ଜଣେ ସାରୁ, ମାନେ ଯେ ଇଙ୍ଗିତ ସାରେ । ଆଉ ଜଣେ ମାରୁ, ମାନେ ସେ ସିଧା ଯମପୁରକୁ ପଠେଇ ଦିଏ ।

ଗାଁରେ କୁଟୁମ୍ବ ପୋଷି ନ ପାରି ଖେଙ୍କୁ କଲିକତା ଗଲା—ବଙ୍ଗାଳୀ ଘରେ ଠାକୁର ! ବେଳେ ବେଳେ ଗାଳି ଶୁଣିଲେ ବି ପାଟି ବୁଜି ରହେ । ସହରୀ ଗୁଣ୍ଡାମି ନଆସେ । ସେଠି ହାତ ଗୋଡ଼ ବୋଲି କଲେ ମାରି ଶୁଆଇ ଦେବେ । ଖେଙ୍କୁ ନିଜ ଦୁଷ୍ଟ ପ୍ରକୃତିକି ରୋକି ବେଶୀ କାଳ ରହିପାରିଲା ନାହିଁ । ହାତରେ କିଛି ପଇସା ହେଲା ପରେ ଗାଁକୁ ଫେରିଆସି ଗୁଆ ମସଲା ଦୋକାନଟିଏ କଲା ।

ଖେଙ୍କା ମିଶ୍ରଙ୍କର ଗୋଟାଏ ଶସ୍ତ୍ର; ଅମୋଘ । ଲୋକେ କାଳିବାସି ନେଲେ ତା ଖେଙ୍କାକୁ ଡରି ଶୁଝି ଦେଇଯାଆନ୍ତି । ଯେ ଫାଙ୍କି ଦେଇ ରହେ, ଶୁଝିବା ଭୟରେ ଆଉ ଦୋକାନକୁ ନ ଆସେ, ତା ବେକରେ ଗାମୁଛା ପକେଇ ଟାଣି ଆଣିବା ସାହସ ଖେଙ୍କୁର ଅଛି । କେହି ତା ଦୋକାନରୁ ସଉଦା ନବାକୁ ଭଲ ପାଆନ୍ତି ନାହିଁ । କିନ୍ତୁ ଦୂରକୁ ଯିବାର ଅସୁବିଧା ଥିଲେ ବା ଜିନିଷଟି କୋଉଠି ନ ମିଳିବାର ଭୟ ଥିଲେ ତାଠୁଁ ଆଣନ୍ତି—

'ମାପ ଉଣା ଘଉ ଟାଣ୍
କୋଉଠି ନ ମିଳିଲେ ଘୁଙ୍ଗାଠୁଁ ଆଣ୍' ।

Digitized by srujanika@gmail.com

ସେତେବେଳେ ଗାଁ ଲୋକେ କଞ୍ଚା ପଇସା ମୁହଁ ଦେଖନ୍ତି ଅଳ୍ପ; ଜିନିଷ ଦେଇ ଜିନିଷ ନିଅନ୍ତି—ମାନେ ଗୁଆ ଗୁଣ୍ଡି ତେଲ ଲୁଣ ବଦଳରେ ବିରି, ମୁଗ, ଧାନ, ଚାଉଳ, କୋଳଥ ଦିଅନ୍ତି । ଖେଙ୍କୁ ନକଲି ଓଜନରେ ଦେଇ ବଡ଼ ମାଣ, ଗଉଣୀରେ ମାପି ନିଏ ।

କିନ୍ତୁ ଅସାଧୁତା ନ ମିଶିଲେ କୁଆଡ଼େ ବ୍ୟବସାୟ ଚାଲେ ନାହିଁ । ଏଇ ବାଟରେ ଖେଙ୍କୁ ଉପରକୁ ଉଠିଲା, ଅଳ୍ପ ଦିନରେ ତାପରି ସେ ହୋଇଗଲା । ଦୁଇ ତିନି ମାଣ ଜମି କିଣିଲା, ଛ' ଝିଅଙ୍କୁ ଯାହାତାହା ଦେଇ ହାତକୁ ବି ହାତ କଲା; କନ୍ୟାଦାୟରୁ ମୁକ୍ତ ହେଲା । ବ୍ୟବସାୟରେ ଲାଭ ନାହିଁ ତ ଆଉ ଅଛି କେଉଁଥିରେ ?

କଥା ଅଛି—'ଭିନେ ହେଲା ଭାଇ ପଡ଼ିଶାକୁ ଲେଖା ନୁହେ ।' କିନ୍ତୁ ଖେଙ୍କୁ ଯେତେବେଳେ ମଲାଗଲା ହୋଇ ପଡ଼ିଲା, ସାନଭାଇ ତାକୁ ବଞ୍ଚାଇଲା । ଦେହରେ ଯେତେବେଳେ ବଳ ଖୁନ୍ଦି ହୋଇଗଲା, ସେ କେଉଁ କଥାରେ ହଠାତ୍ ଚିଡ଼ି ଉଠି ତା ମୁଣ୍ଡକୁ ଠେଙ୍ଗା ଉଠାଇଲା—କୃତଘ୍ନ ।

ଏଇ ଖେଙ୍କୁ ଦିନେ ସମସ୍ତଙ୍କ ପରି ବୁଢ଼ା ହେଲା । ବୁଢ଼ା କାଳକୁ ରୋଗ ମାଡ଼ି ବସିଲା ।

ଅଦୂରରେ ହାଟ । ରେଡ଼ିଓ ବଜାଇ ଖେଙ୍କୁ ଯେତେ ଡାକିଲା, କେହି ଆଉ ତା ଦୋକାନକୁ ଆସିଲେ ନାହିଁ । ଦୋକାନଟି ଗରାକ ଅଭାବରୁ ଭାଜିଗଲା ।

ବୁଢ଼ା କାଳର ଦୁଶ୍ଚିନ୍ତାକୁ ଯେତେ ରୋଗ ବି ଆସି ଘୋଟିଲା । ଖେଙ୍କୁ ଯାହା ପଇସା ସାଇତି ରଖିଥିଲା, ଔଷଧ କିଣାରେ ଗଲା । ସେଥିରୁ ସେ ଗୋଟିଏ ବୁଦ୍ଧି ପାଞ୍ଚିଲା—ଦୁର୍ବୁଦ୍ଧି, ନିର୍ଜନ ଓସ୍ତ ଗଛ ମୂଳେ ବେଦୀଟିଏ ଗଢ଼ି ଶିନାଥ ଗୋସାଇଁ ଥାପିଲା; ଜାକଜମକରେ ଭୋଗରାଗ କଲା । ଚୂଡ଼ାଘସା, ଉଖୁଡ଼ା, ଚୂଡ଼ାପୁଆଦି ଭୋଗ ପାଇଲା ପରେ ଖେଙ୍କୁ ବମ୍ ବମ୍ ଭୋଳାନାଥ ଡାକି ଚିଲମ ଶୋଷିଲା; କିନ୍ତୁ ଧୂଆଁ ଢୋକିଲା ନାହିଁ । ସେଠି ଯେତେ ଟୋକା ଚିଲମ ଧରିଲେ, ଆଉ ଛାଡ଼ିପାରିଲେ ନାହିଁ ।

Digitized by srujanika@gmail.com

ଘନ ଘନ ମେଳା ହେବାକୁ ଲଗିଲା, ସଙ୍ଗୀତ ଜୁଆର ଛୁଟିଲା । ମେଳା ସରିଲା ବେଳକୁ ରାତି ଅଧ । କାମଧନ୍ଦାରେ ଆଉ ମନ ନାହିଁ । ଗାଁର ଯୁବସମାଜ ଏହି ପ୍ରକାରରେ ବିଗିଡ଼ି ଗଲା । ଗଞ୍ଜେଇ ବିକାଳି ଖେଙ୍କୁ ବେଶ୍ ଦି’ପଇସା କଲା; କେତେ ଘର ଏଥିରେ ଉଚ୍ଛନ୍ନ ହେଲେ ।

ତା ଦୋଷ ବାଗଲେ । ଡିହକୁଞ୍ଜ ପରି ଡିହରେ ଶୋଇ ସେ ଗଲାଅଇଲାଙ୍କୁ ଭୁକୁଥିଲା । ଏବେ ବାପପୁଅଙ୍କ ଭିତରେ କଳି । ଯେମନ୍ ବାପ, ତେମନ୍ ପୁଅ ବରମ୍ଭା ବାପ୍‌ସେ ବେଟା ଜ୍ୟାଦା । ଯେତେକ କଦର୍ଯ୍ୟ କୁତ୍ସିତ ଗାଳି ଶୁଣି ବାଟୋଇ ଦି କାନରେ ହାତ ଦେଇ ରାମ୍ ରାମ୍ କହି ଚାଲିଯାନ୍ତି ।

କଥା ଅଛି—

‘ଯାହାକୁ ଯେ<br>
ବିରିକ ଚୁଉଲ ତିନ୍ତାଇ ଦେ ।’

ଏ ସଂସାରରେ ଯେ ଯେମିତି, ବିହିବିଧାତା ତା ପାଇଁକି ସେମିତି ମାଇପୀଟିଏ ଖଞ୍ଜି ଦିଅନ୍ତି । ତେବେ ସେ ଘଇତା ପରି ଖେଙ୍କି ଉଠେ ନାହିଁ । କଅଁଳ କଥା କହି ସୂତରେ ଚେରଟି କାଟିଦିଏ । ବଉଳ ଆସୁଥିବା ଗଛଟି ଝାଉଁଳି ପଡ଼େ । ଅହ୍ୟ ହୋଇ ସେ ଏକାଦଶୀ କରେ, ନିର୍ଜଳ ଓଷାରେ ଘରେ ନିଷ୍ଠା, ଅବଶ୍ୟ ପାହାନ୍ତି ପଖାଳଖିଆ ତ ମଫସଲର ସାଧାରଣ ବିଧି । ସେ ଯୋଉ ଚଉକସ୍ ବକତଟି ପକେଇଥାଏ, ସେଥିରେ ଓଷା ଦିନଯାକ ତାର ଆର୍ମ୍ବିଳୀ ହାଲୁଟି ଉଠୁଥାଏ ।

ଘଇତା ବଳୀଆର ଥିବା ଯାକେ ତା ପିଠିରେ ହାତସୁଖ କରୁଥିଲା, ଏବେ ଯେତେକ ନରକ ପଦାର୍ଥ ଦରମଲା ଘଇତା ତୁଣ୍ଡରେ ଢାଳି ଦେଇ ଘରଯା ସୁଖୀ ।

ସମୁଦି ଆଉ ମୁଁ ଯାଇ ମିଶ୍ରଙ୍କ ପାଖେ ବସିଲୁ । ମିଶ୍ରେ ବଟୁଆ କାଢ଼ିଲାରୁ କହିଲି—ଥାଉ, ପାନ ଅଛି । ପଚାରିଲି—ମିଶ୍ରେ ଆପଣେ, ଏ ସଂସାର କେମିତି ଲଗିଲା ?

Digitized by srujanika@gmail.com

"ଯେମିତି ଲଗିବାର କଥା, ସେମିତି। ସଂସାର ଯେମିତି ଗଢ଼ିବ, ସେମିତି ତାର ସୁଆଦ। ନବକୁଆ ଲାଗି ଏ ଖଣ୍ଟା, କର୍ମକୋଡ଼ିଙ୍କ ଲାଗି ପିତା।

ମୁଁ ଏଠି କାହା ପାଖେ ହାରିନାହିଁ। ମୋ ମୁହାଁମୁହିଁ କେହି ହୋଇ ପାରିନାହାନ୍ତି; ଏବେ ଦେଖୁଛି—ମୁଁ ନିଜ ପାଖେ ହାରି ଯାଇଛି। ଦେଖିଲ ତ ପୁଅଙ୍କ ଢଙ୍ଗ; ଏ ଫେର୍ ଆଇ. ଏ ପାସ୍ କରିଛନ୍ତି ! କଁଓ, ମୁଁ କଣ ପାଠ ପଢ଼େଇଥିଲି, ମୋ'ରି ଉପରେ ଝଡ଼େଇ ହବା ଲାଗି !

ଏ କଳିଯୁଗ ମାଇପୀ ପ୍ରବଳ ଯୁଗ; ଏ ଯୁଗରେ ମାଇପେ ଇନ୍ଦ୍ର ଚନ୍ଦ୍ର ମାନୁନାହାନ୍ତି। ବୁଢ଼ାକାଳକୁ ଭୁଣ୍ଡରେ ଭଲ ଟିକେ କିଛି ରଖିଲେ ସିନା ସୁଖ। ମୋ ମାଇପ ମୋ ଭୁଣ୍ଡରେ ଅଜାଡ଼ୁଛି ଯେତେ କିଛି ନର-କର ଆବର୍ଜନା।

ବେଗ ତ ଓଷଦ ମାନୁନାହିଁ। ଆଜି ମୁଣ୍ଡ କଣ ହେଲେ କାଲି ପେଟ କି ଅଣ୍ଟା; ଆଉ ବଞ୍ଚି କି ଲାଭ ?"

ପେଟ ମଇଳାର ସଙ୍ଗୀ ଯେପରି ଅଧୋବାୟୁ, ଖେଙ୍କୁର ସଙ୍ଗୀ ସେହିପରି ବଙ୍କୁ। ଯେତେବେଳେ ବାଟିଏ ସମ୍ପତ୍ତି ଥିଲାବାଲା ଘରକୁ ପୁଅ ହୋଇ ଗଲା, ଲୋକେ କହିଲେ—ଧନ୍ୟ ଭାଗ୍ୟ ! ମୋଫତରେ ଫେର୍ ଏମିତି ମିଳିଯାଏ ! କୁଟା ଖଣ୍ଡିକ ଦ'ଖଣ୍ଡ ନ କରି ବସି ଖାଇଲେ ବି କିଛି ଅଭାବ ହବ ନାହିଁ।

କିନ୍ତୁ ବସି ଖାଇଲେ ଅସରନ୍ତୀ ନଈ ବାଲି ବି ସରିଯାଏ। ଦୁଃଖ କଷ୍ଟ କରି ସମ୍ପତ୍ତି ନ କରିଥିଲେ କିଏ ତାର ମୂଲ୍ୟ ବୁଝେ ? ସତକୁ ସତ ବର୍ଷ ପାଞ୍ଚୁଟାରେ ହିଙ୍ଗିଲି ମିଠେଇ ଖାଇ ସବୁତକ ଜମିବାଡ଼ି ବଙ୍କୁ କୁଆଡ଼େ ଉଡ଼ାଇ ଦେଲା, ଘରେ କଳାକନା ବୁଲାଇ ଦେଇ ଯୋଉଠୁ ପୁଅ ହୋଇ ଆସିଥିଲା; ସେଇଠିକି ପୁଣି ବାହୁଡ଼ି ଗଲା। କେଡ଼େ ଆଶାରେ ଲୋକଟି ପୁଅ କରି ଆଣିଥିଲା, ଅନ୍ତେ ତା ଦୁଆରେ ସଞ୍ଜବଳଟିଏ ବି ବସିଲା ନାହିଁ। ଉହରେ ବିଲୁଆ ଡେଇଁଲା।

ବାପ ଥିଲା ପୁଅ, ସହଜେ ତ ହୁଣ୍ଡା, ଅର୍ଦ୍ଧୋଳିଆ ବୁଲିଲା। ଝେଙ୍କୁ ସାଙ୍ଗେ ବସି ବିଗୁର ପକାଏ—ଆଜି କୁଆଡ଼େ ଯିବା ?

Digitized by srujanika@gmail.com

ଅମୁକ ଲୋକର ପୋଖରୀରେ ମାଛଙ୍କର ପଖୀ ଉଠିଲାଣି । ଦିନେ ପୋଖରୀ ଗୁଡ଼ ଉଡ଼ ପଳାଇବେ । ତା ଆଗରୁ ଖତମ୍ କର ।

ଅଗିଲ୍ ପଟକେଇଚ, କଳା ବାଡ଼େଇଚ । ଅଗିଲକୁ କାଢ଼ି ଉପରକୁ ଫୋପାଡ଼ ଦବା, କଳା ଓପାଡ଼ ଦବା । ଗୋଟିଏ ଖେପାରେ ଛେର୍ । ଗୋଟେ ଦିନ୍ଟା ଜନ୍ତୁ ଯେନ ଅଗିଲ୍ ଫୋପାଡ଼ କଳା ମାର ଆମ ବାଟରେ ଆମେ ଗୃଲବା । ଯେମିତି ଜଣା ପଡ଼ବ ନାହିଁ, ମାଛ ଧରା ହେଇଚ ବୋଲି । କାରଣ ମାଲିକ ତରକି ଯିବ । ଆଉ ଥରକୁ ଆଉ ଥରେ ଅଛୁ ତ !

'ଅଭାବେ ସ୍ୱଭାବ ନଷ୍ଟ' ସେ କହେ । ପେଟ ଥଣ୍ଡାଥିଲେ ଦିଅଁ, ଦେଉଳ ସବୁ ଠିକ୍ । ପେଟ ତାତଲେ କି ବାଛ-ବିଗୃର ? ଲୋକ ଅମୁଣିଆ ଖାଏ, ଅମୃତମୁଣୋହିଁ ପେଟରେ ପକେଇ ଦିଏ ।

ବଙ୍କୁ ଦିଅଙ୍କ କୋଠି ତଳେ ଲଙ୍ଗଳ ଲୁହା ମାର ଧାନତକ ଗାଳ ନିଏ । ଏଣେ ଗୃବି ଠିକ୍ ପଡ଼ଥାଏ ! କିନ୍ତୁ ଭିତରେ କୋଠି ଖାଲି । କିଏ ନେଲା, କିଏ ନେଲା ହୁରି ପଡ଼େ । ବତାବୁଲା, ଲୁଲାବୁଲା ଆସନ୍ତି; ବଙ୍କୁର ତୋଟିକ ବତା ଦିଫାଳ ଚିପି ଧରିଲେ ବି ଓଲଟି ଗାଲୁ ପେଲେ—ଗରିବ ମାଇପ ସମସ୍ତଙ୍କ ଶାଳୀ ! ମତେ ନୁଆଁଣିଆଁ ଦେଖି ଏଠି ଗୋଟେ ନବରଙ୍ଗ ଲଗେଇଚ । ଏ ଗାଆଁର ବଡ଼ଲୋକ ଗୃେଷା, ନାଗି ଯେତେ ଯାହା କଲେ ବି ସାଇବାସ୍ । ପଦେ ହାଙ୍କିବାକୁ କାହାର ଜିଭ ଓଲଟେ ନାହିଁ । ହଉ, ମୁଁ ଗୃେଷା କଲି ତ କଲି, କିଏ ମୋର କଣ କରି ପକେଇବ, କର ।

ବଙ୍କୁର ଲାଲ୍ ଆଖି ଦେଖି କିଏ କୁଆଡ଼େ ଖସନ୍ତି । କଥାଟା କିଏରେ, କିଏରେ ହୋଇଯାଏ । ଖଣ୍ଡିଆଟାଏ ତ, କାଲେ ଅକଶ ରଖି ଅନ୍ଧାରିଆ କରିବ, ମନରେ ଭୟ । କୋଠ ଧନ ତ; କୋଉ ଆମର ହେଇଚ ! ଏ ବାବନା ଭୂତଟା ସାଙ୍ଗେ ମିଛକୁ କାହିଁକି ଚୁଟି

Digitized by srujanika@gmail.com

ଧରାଧରି ହୋଇ ମୁଣ୍ଡ ଫାଟିବ ? ଯଦି ଦିଅଙ୍କ ଧନ ସେ ଖାଇଥିବ, ଯଦି ସତରେ ଭଗବାନ୍ ସୃଷ୍ଟି ଆଡଜାଡ କରୁଥିବେ, ସେଇ ବୁଝିବେ । ବଙ୍କୁର ମନ୍ତା ନିକାଲି ଦେବେ । ବଙ୍କୁର ଶ୍ରେଷ୍ଠ—ପେଟ ପୋଷ୍, ନାହିଁ ଦୋଷ୍ ନ୍ୟାୟସୂତ୍ରରେ । ସମସ୍ତେ ଖାଇପିଇ ହେଉଡ଼ ମାରୁଥିବା ବେଳେ ମୁଁ କଣ ଖାଇବା ବିନା ମରିବି ? ଯାହାର ବହୁତ ଅଛି, ମୁଁ ତା'ର ନିଏ । ଚୁଙ୍ଗୁଡ଼ି ଚିପିଲେ ମୁଣ୍ଡରେ ଗୁହ । ମୁଁ ଗରିବ ଧନ ଛୁଏଁ ନାହିଁ । ବଡ଼ ଲୋକ କୋଉ ଭଲ ବାଟରେ ଧନ କମଉଛନ୍ତି କି ? ଯେ ସମସ୍ତଙ୍କ ଠୁଁ ହରଣଚାଲ୍ କରୁଚି, ତା ଠୁଁ କିଛି ହରଣଚାଲ୍ କଲେ ଦୋଷ କଣ ? ଦିଅଁ କଣ ଖାଇବା ବିନା ମରି ଯାଉଛନ୍ତି ? ସେ ସବୁ ଅମର । ତାଙ୍କ ଧନ କିଛି ନେଲେ ଦୋଷ କଣ ?'

ଶ୍ରେଷ୍ଠର ବଦନାମ୍ ଥିଲେ ବି ବଙ୍କୁକୁ କେହି ଘୃଣା ଦୃଷ୍ଟିରେ ଦେଖନ୍ତିନାହିଁ । ବାହ୍ମଣପଣ, ଲୋକନାଥ ମେଳା, ଶ୍ରାଦ୍ଧ ମଉଳା, ସାଗର ସ୍ନାହାନ, ଯନ୍ତାଲ, ଠାକୁରାଣୀଙ୍କ ପାଖେ ବୋଦାପକା, ସବୁଥିରେ ବଙ୍କୁ ଆଗୁଆ ହୋଇ ବାହାରେ । ବୋଦା ପଡ଼ିଲା ପରେ କେଲାଇବ ସେଇ, ହଣ୍ଡାହାଣ୍ଡି ଉଠାଇବ ସେଇ ।

କାର୍ତ୍ତିକ ହବିଷ୍ୟ ଉଜୁଆଁ ଦିନ ଗାଁର ସବୁ ବିଧବାଙ୍କର ଗୋପୀନାଥଙ୍କଠି ଗୋଟେ ଭୋଜି ହୁଏ । ଖିଆପିଆ ବେଳେ ନେତ ମାଉସୀ କହେ—ଏକା ବଙ୍କା ଲାଗି ସିନା, ଯୋଉ ସାରୁ ଆଣିଥିଲା, କାନ୍ହକୁ ଗ୍ରୁଟି ଦେଲେ କାଦୁଅ ମେଞ୍ଚା ପରି ଲାଖିଯିବ ।

ହରଗଙ୍ଗୀ ବୁଢ଼ୀ ହସୁ ହସୁ ଏହାର ଉତ୍ତର ଦେଇ କହିଲା—ମାସକଯାକ ତ ସାରୁ ଖାଇ ଖାଇ ଗାଲ ଚଳୁଟରେ ଫୁଲିଗଲାଣି, ପୁଣି କେତେ ସାରୁ ସାରୁ ହଉଚ ବା ?

ବଙ୍କୁ ଆମ ଗାଁର ଖେଳୁଆଡ଼ । ଗୋଟାଏ ଦଳ ଗଢି ମହାଦେବଙ୍କ ହୁଡ଼ାରେ କେତୁଟା ଟୋକାଙ୍କୁ ଶୂନ୍ୟମାରି, ଦଣ୍ଡ, ବୈଠକ, କୁସ୍ତିକସରତ, ବାଡ଼ିବୁଲା, ଖଣ୍ଡାବୁଲା ଶିଖଉ ଥିଲା । ଏ ଉଆଁଡେଇଁଙ୍କ ଚଉକସ୍ ଖୋରାକ ହେଲେ ସିନା ହବ । ବାସି ପଖାଳକୁ ଲୁଣ ବିକଟେ ନାଇଁ,

Digitized by srujanika@gmail.com

ଓପଠ ଦୋଓଡ଼େଇ ହେଇ ପଡ଼ୁଚ, ଏଥିରେ କ ଆଖଡ଼ା ହବ, ଆପେ ଆପେ ଭାଙ୍ଗିଗଲା ।

ବଙ୍କୁ ଭାର ସାହସୀ; ଗାଁ ମାନମର୍ଯ୍ୟାଦା ଉପରେ ଆଞ୍ଚ୍ ଆସିଲେ ସବା ଆଗେ ସେ ଅଗ୍ନିକୁ ଡେଇଁପଡ଼େ ।

ଗାଁ ନ୍ୟାୟରେ ସେ ଚେର ଛୁଣ୍ଡେଇ ଶେକ୍‌ଠୋକ୍ କଥା କହେ, କଥାଟା ଖାଲରେ ପଡ଼ୁ କ ଢିପରେ ପଡ଼ୁ, ପରୁଆ ନାଇଁ । ଗୁଚର-ଦଉଡ଼ିକଟା ସେ ।

ତା ଆଗରେ କେହି କଚ୍ଛ ନାଲିସ୍ କରେନାଇଁ । କାରଣ ତାର ସାଲିସ୍ ଭାବ ନାହିଁ—ଏ ପଠ, ନଇଲେ ସେ ପଠ, ଶେକ୍‌ଠୋକ୍ ଛୁଣ୍ଡେଇ ଦିଏ ।

ପୁରୁଣା ଖଣ୍ଡାଟି ନୂଆ ନଦରେ ଘଷି ସିନ୍ଦୂର ଲଗେଇ ବାହାରେ —'କରେ ବଙ୍କୁ, ଏ ତ ଭଲ କଥା ନୁହେଁ । ହିଡ଼ହଣା କଲା ତ ଗାଁର ନଡ଼ିଦନଆଁ କଥା । ଏଇ ଝିମିଟି ଖେଳରୁ ଭାଇ ଭାଇ ଭିତରେ ମହା-ଭାରତ ଲଢ଼େଇ ସୃଷ୍ଟି ହବା କଣ ଭଲ ? ବଇଶ ବେକ ଛୁଣ୍ଡାଇଲେ ତୋ ବେକ କ'ଣ ରହିବ ?' 'ମୋ ମୁଣ୍ଡ ତଳେ ଗଡ଼ିବ ତ ଗଡ଼ୁ । ହରବ୍ରହ୍ମା 'ହେଲେ ବି ଆଉ ନିଧିଆକୁ ସଂସାରରେ ରଖି ନ ପାରିବେ । ତା ମୁଣ୍ଡ ତଳେ ଗଡ଼ାଇବି, ଗଡ଼ାଇବି, ଏ ମୋର ଖୁଷ୍ଟ ପ୍ରତିଜ୍ଞା ।

ଭାଇ ମୋଠୁଁ ଭିନେ ହେଲା; ତିନ ତିନଟା ଝିଅ ମାଇପ ବେକରେ ବାନ୍ଧି ଦେଇ ଅକାଳେ ସଂସାରୁ ଖସିଲା । ଏ ଗୁହର ନିଧିଆଟା ଘରଜୋଇଁଆଁ ହେଇ ଆସି ମୋ ଉପରେ ଘୋଡ଼ା ଚଢ଼ିବ ? ମୋ ଗୁଇରେ କଣ୍ଟା ପୋତୁଚ, ଏ ସତ୍ୟାନାଶିଆ, କୁଳବୁଡ଼ା । ତା ବେକ କାଟି ଚୁଟି ଧରି ମୁଁ ନାଚିବି, ତାହେଲେ ମୋ ରାଗ ମରିବ । ତାପରେ ମତେ ମାରନ୍ତୁ, ସାରନ୍ତୁ କ ଜାଅନ୍ତା ଅଗ୍ନି ନରକରେ ଫକେଇ ଦିଅନ୍ତୁ, ଡର ନାଇଁ ।'

'ଆରେ ନା-ନା, ଏଠାକୁ ବସି ନ୍ୟାୟ କରିବା ।'

Digitized by srujanika@gmail.com

'କେତେ ଗାଁ । ନିଆଁ ମୁଁ ଦେଖିଚ; ଏପଟୁ ପକେଇବେ, ସେପଟୁ ପକେଇବେ; ଯୁଆଡ଼ୁ ବେଶୀ ମିଳିବ, ସିଆଡ଼କୁ ନିଆଁ ଢଳିବ । ଟାଉଟରିଆଙ୍କ ଗତିଗତି କଣ ମୁଁ ଜାଣେନାହିଁ ?'

'ଏମିତି କେତେ କଳି ତ ଭଦ୍ରଲୋକ ବସି ଛିଣ୍ଡଉଛନ୍ତି, ନ ହେଲେ ତ ଟିକିଏ ଟିକିଏ କଥାରେ କେତେ ହଣାମରା ହୋଇ ମରନ୍ତେ । ଏ ସଂସାର ଚଳନ୍ତା କେମିତି ? ଟିକିଏ ଥୟ ଧର । ନିଧିଆକୁ ଡାକି ବୁଝାଇବା । ଯୋଉଠି ହାଡ଼ ହାଣି ଜମି ଘୁଞ୍ଚାଇଚ, ସେଠି ନିଜ ସୀମା ଭିତରେ ସେ ହାଡ଼ ନିଦବ ।'

'ଦୁଷ୍ଟ ଲୋକକୁ ଯେତେ ବୁଝାଇଲେ ସେ ବୁଝିବ ? ଗାଲୁଆ ଦୁର୍ଯ୍ୟୋଧନକୁ ସ୍ୱୟଂ ଭଗବାନ୍ ବୁଝେଇ ପାରିଲେ ନାହିଁ । ଶେଷକୁ ନିଜ କୁଳ ବୁଡ଼ିଲା, ଭୀମ ଗଦା ମାଡ଼ରେ ଜଙ୍ଘ ଭାଙ୍ଗିଲା, ଅପନ୍ତରାରେ ପଡ଼ି ପଡ଼ି ମଲା । କଥା ଅଛି—

'କଳେ ବଳେ କଉଶଳେ
ଶତ୍ରୁକୁ ସାଧିବ ହେଳେ ।'

'ଶତ୍ରୁକୁ ସାଧୁ ସାଧୁ ନିଜେ ବି ଚିତ୍‌ପଟାଙ୍ଗ ହୋଇଯାଇପାର । ଯୁଦ୍ଧ ଫଳାଫଳ କଥା କିଏ ଠିକ୍ କରି କହିପାରେ ?'

ଏଇ ବୁଝାବୁଝି ଫଳରେ ଭାଇ, ଯେ ଆଜି ଭଗାରି ହେଇଚ, ସେ ଫେର୍ କେମିତି ତୋ ଲାଗି ପ୍ରାଣ୍ ଦବ, ଦେଖିବୁ । ମଣିଷ ଉପରେ ବିଶ୍ୱାସ କର । ରାଗ ବ୍ରହ୍ମଚଣ୍ଡାଳ; ତା କବଳରେ ପଡ଼ ନାହିଁ ।'

କେତେ ଦିନ ପରେ ସତରେ ଘଟଣାର ମୋଡ଼ ବଦଳିଲା । ପଞ୍ଚାୟତ ବସି ଏ କଳି ଛିଣ୍ଡାଇ ଦେଲେ । ନିଜେ ବଙ୍କୁ ମଲା ଗଲା ହେଇ ପଡ଼ିଲା । ନିଧିଆ ଖୁବ୍ ସେବା କଲା । ଦିହେଁ ମିଶି ତାକୁ କଟକ ବଡ଼ ଡାକ୍ତରଖାନାକୁ ନେଲେ । ବହୁ କୁହାବୋଲା ପରେ ଡାକ୍ତର ଭଲ କଲେ, ବିଦାୟ ବେଳେ ପଚାରିଲେ—ତୁ କଣ କରୁ ? ବଙ୍କୁ କହିଲା – କିଛି କରେ ନାହିଁ !

Digitized by srujanika@gmail.com

ଡାକ୍ତର—ବସି ବସି ଅନ୍ନ ଧ୍ୱଂସ କରୁ ! ମତେ ଆଗରୁ ଟିକଏ ଜଣାଇଲୁ ନାହିଁ ? ଅପରେସନ୍ ବେଳେ ଦେଖିଲି କାମ କରିଥାନ୍ତି ! ଏମିତି ମଣିଷ ବଞ୍ଚି କି ଲାଭ ?

ମଧୁ ଦାଶରୁ 'ମଦାଶ' ଡାକନାମ । 'ଗାଁ ଜନଆଁ ସିଙ୍ଘାଣିନାକୀ' କଥା ଅଛି । ତଥାପି ଗାଁ ସେ ମୁଣ୍ଡେ ସେ ବଡ଼ ହୋଇଥିଲି, କାଳିଆ ଗୋପାଳଆ ଝିଅ ପାଠକୁ । ବାପଘରୁ ଶାଶୂଘର, ଶାଶୂଘରୁ ବାପଘର ପାଠ ଦିନକେ ଦି ଥର ଯା ଆସ କରୁଥିଲା । ପହିଲି ପାଳରେ ସେ ବାହୁନା ପକେଇ ନ ଥିଲି କି ସବାରିରେ ଆସିବା ମାନମର୍ଯ୍ୟାଦା ରକ୍ଷା କରି ହୋଇ ନ ଥିଲା । ମାତ୍ର ପାଞ୍ଚ ସାତ ଘର ଛଡ଼ା; ମୁହଁସଞ୍ଜ ହେଲାରୁ ସାଇର ସଙ୍ଗିନୀ ଓ ଜଣେ ଅଧେ ବୟସ୍କା ଶଶୁର ଘରେ ଗୁଡ଼ଦେଇ ଯାଇଥିଲେ । ଶଗଡ଼ରେ ଭାର ଓ ପେଡ଼ିପେଟରା କେତୋଟି ଥୁଆ ହୋଇ ଆସିଥିଲା । ବିଧିବିଧାନ ପାଳିବା ଉପରେ କେହି ଜୋର୍ ଦେଇ ନ ଥିଲେ ।

ଗାଁ ଝିଅ । ପାଠ ଗାଁରେ ଯିବାଆସିବା ବେଳେ ଲମ୍ବା ଓଢ଼ଣା ପକାଉ ନ ଥିଲା । ଦୂର ବନ୍ଧୁ ସିନା ସୁନ୍ଦର, ଗାଁ କୁଣିଆଁ କୁଣିଆଁ ପରି ଲାଗେନାହିଁ । ଗୃହ ପୁନଅଁରେ ଜୋଇଁ ଡାକରା ବି ହେଲା ନାହିଁ । ଗୃହ କାମ ବୁଝାଶୁଝା କରିବାକୁ ଜୋଇଁ ଡେଙ୍ଗେ ଡେଙ୍ଗେ ଗାଁ ଦାଣ୍ଡେ ଦାଣ୍ଡେ ବୁଲିଯାନ୍ତି । ଶଶୁରକୁ ମୁଣ୍ଡ ନୁଆଁନ୍ତି ନାହିଁ । ଶଶୁର ବି ଯାଉଣୁ ଆସୁଣୁ ଜୋଇଁଠୁ ନମସ୍କାର ଆଶା କରନ୍ତି ନାହିଁ । ବେଶୀ କାରବାରରେ ବନ୍ଧୁ-ପଣ ଘଷରି, ଏ କଥା ଦିହେଁ ଜାଣନ୍ତି । ମାନ୍ୟ ଦିଆଦେଇ ଶୂନ୍ ସ୍ତରକୁ ଆସିଲେ ବି ଥାଏ ।

ହଠାତ୍ ଦିନକ ଜରରେ ପାଠ ମଲା । ମଦାଶକୁ ବୁଢ଼ାଦିନେ ଚୂଲୀ ଫୁଙ୍କିବାକୁ ହେଲା । ଓଦା ଜାଳ । ନବୁଜ ଘରେ ନାକ କାନ ରୁନ୍ଧ ହୋଇଯିବାରୁ ସ୍ୱଭାବତଃ ରାଗୁଆ ମଦାଶ ଦିନେ କାଠ ଫାଳିଆରେ ହାଣ୍ଡି ପିଟିଦେଲା । ଏବେ ଖାଇବ କଣ ? କେତେ ଦିନ ଚୂଡ଼ା ମୁଢ଼ି ଖାଇ ଜଣେ ରହିପାରେ ?

Digitized by srujanika@gmail.com

ମଦାଶ କୁଣିଆଁ ମଇସଙ୍କ ଜଗଅ.ରେ କେତେ ଲୁଆଡ଼େ କନ୍ୟା ଖୋଜେଇଲା । ଦୋଡ଼ ବଭ ଲାଗି କନ୍ୟା ଦବ କଏ ? ଘଣ୍ଡ ବଭର ପକ୍ଷପାତ୍ତ ନ ଥିଲା ସେ । ଅନ୍ତ ହଇରଣ ହବାରୁ ସେ ଘଣ୍ଡଙ୍କ ଉପରେ ଆଖି ପକାଇଲା । ଅନ୍ତ ଉଜୁଡ଼ା ଅବସ୍ଥାରେ ଗୋଟେ ଘଣ୍ଡ ତା ସାଙ୍ଗେ ଆସିବାକୁ ରାଜ ହେଲା । ହାଟ, ମେଳଣରୁ ବଳଦ କଣି ଆଣିଲା ପର ଘଣ୍ଡଟାଏ ଯେନ ଆସି ମଦାଶ ଘରେ ପହଞ୍ଚିଲା । ପୁରୋହତେ ମନ୍ତ୍ର ବୋଲଲେ ନାହିଁ କ ସାଇମାଇପେ ଗୋଟାଏ ହୁଳହୁଳ ପକାଇଲେ ନାହିଁ ।

ଗାଁଯାକ ହୋ-ହଲ୍ଲା—ଓହୋ, ମଦାଶ କେଡ଼େ କାମ କଲା ! ଗାଁ ମାଇପେ ଏଠିସେଠି ବସି ଢଗ୍ଗର ପକେଇଲେ । ନିଆଁ ପାଣି ବନ୍ଦ ହେଲା । ଦାଆଁ ଦେଉଳ ବ ମନା ହେଲା । ଗାଁବାଲାଙ୍କ ସଙ୍ଗେ ନମିତ୍ତ୍ୟପଙ୍କରେ ବସିବା ମଧ ବାରଣ କରାଗଲା ।

ମଦାଶ କହଲା—‘ଆତୁରେ ନୟମୋ ନାସ୍ତି ।’ ଦୁରବସ୍ଥାରେ ପଡ଼ ଏ କାମ କରଛୁ । ମୁଁ ମୁଠିଏ ଖାଇବାକୁ ପାଉ ନ ଥିଲ । ମତେ କେହ ଦନଟିଏ ଚଲାଇ ପାରନାହାଁ । ତମ ସାଙ୍ଗେ ଏବେ ନ ଚଳଲେ ବ ବଞ୍ଚିପାରବ । ଘର ଦାଆଁ ନଜେ ପୂଜବ; ସହରରେ ଖିଅରବାଆର ହେଇ ଆସିବ, ସେଠି ଉଜଳା ଘରେ ଲୁଗା ପକାଇବ । ତମେ ସମସ୍ତେ ଥାଇ ବ ମୁଁ ଅନ୍ତ ଏକୁଟିଆ ହୋଇଥିଲ । ଏବେ ଏକଘରକଆ ହେଲ ତ ଭାବନା କଣ ?

ଲୋକବାକ ବନ୍ଦ ହୋଇ ନ ଥିଲ । ଗୃହବାସ ସୁରୁଖୁରୁରେ ଚଳିଲା । ବର୍ଷେ ଗଲା; ଠାକୁରଙ୍କୁ ଶହେ ଟଙ୍କା ଦେଇ ଅଜାତଆ ମଦାଶ ଜାତ ହେଲା ।

ସେତେବେଳକୁ ବୟସ ପଚିଶ ବର୍ଷ । ଯୋଉଟିକୁ ଆଣିଲା, ସେଟି ଛଡ଼ା ବାଛୁରୀଟିଏ । ଏ ଦରବୁଢ଼ାଟି ତା ମନ ଲାଖୁଚ କୋଉଠି ?

ଉହା ବାହାରଲା ଦନ କୁମ୍ଭାର ଟୋକା ମନୁଆଁ ଶ୍ରାଦ୍ଧ ହାଣ୍ଡି ଦବାକୁ ଆସିଥିଲା । ଚନ୍ଦ୍ରୁଖର ମନ ତାଠି ଲାଖିଗଲା । ଯାହା ଲାଗି

Digitized by srujanika@gmail.com

ମଦାଶ ଏତେ ଦୁଃଖ କଷ୍ଟ, ଅପମାନ ଭୋଗିଥିଲା, ସେ ତାର ହୋଇ ବି ହେଲା ନାହିଁ ।

ପୁଅଟିଏ ହେଲା ପରେ ସେ ବାଞ୍ଝ ଅପବାଦରୁ ସାହା ପାଇଲା । କିନ୍ତୁ ଚନ୍ଦ୍ରଙ୍କ ଶ୍ୟାମ ଅପବାଦ ଲାଗି ରହିଲା ।

ହରିନାଥ ମେଳାରେ ମଦାଶ ଆଗୁଆ । ପ୍ରାୟ ସବୁଦିନ କୋଉଠି ନା କୋଉଠି ମେଳା ହୁଏ । ଗୋଟେ ଦିଟା ଶୋଷା ଚିଲମ ନ ଶୋଷିଲେ ମଦାଶକୁ ନିଦ ହୁଏ ନାହିଁ । ସେ ସବୁ ଦିନ ଗଞ୍ଜେଇ ଖାଏ, କିନ୍ତୁ ଗଞ୍ଜାଡ଼ି ନୁହେ । ଆଗେ ଆମ ଗାଁରେ କେତେକ ଅଫିମା ଥିଲେ । ଏବେ ଗଞ୍ଜେଇଆ ଘରେ ଘରେ । ମେଳା ଭୋଗ ନାଆଁରେ ଗଞ୍ଜେଇ ଚଳେ ।

ମଦାଶର ସ୍ୱର ମିଠା; ଓଡ଼ିଶୀ ସଙ୍ଗୀତରେ ଓସ୍ତାଦ୍, ଗାଁର ପୁରାଣପଣ୍ଡା ସେ । ସମସ୍ତଙ୍କୁ ବୁଝାଏ — କୋଉ କଥା ଅଧା ଶୁଣି ଚାଠ୍‌କନେ ରାଗିଯିବନି । କିନ୍ତୁ ନିଜେ ରାଗୁ ରାଗୁ ଚାଠ୍‌କନେ ଚାବଡ଼ା ଲଗାଇ ଦିଏ । ତେଣୁ ତା ପୁରାଣଙ୍କାନ ସବୁ ପୋଥି ବାଇଗଣ ହୋଇ ରହିଯାଏ ।

ମଦାଶର ବଡ଼ ଭାଇ ଯଦାଶ—ମାନେ ଯଦୁଦାଶ । ଯବାନ୍ ବୟସରେ ଯଦାଶ ମଲେ, ତାଙ୍କୁ ଝୁରିଝୁରି ଭାଉଜ ବି ମଲେ, ସଂସାରରେ ଛାଡ଼ିଗଲେ ଝିଅ ଲାବେଣୀକି । ମଦାଶ ପାଳିଲା, ବଡ଼ଘରେ ଚାଲା କଲା; ଯାହା ଯେମିତି ଦେଇ ପଠାଇ ପାଳି ପଠେଇଲା । ଯିବାଆସିବା, ଦିବାନିବା ବି ଚାଲିଥିଲା । କେମିତି ଝିଆରୀ ସାଙ୍ଗେ ଅପଡ଼ ହେଲା, ନାରାୟଣଙ୍କୁ ଗୋଚର । ରାଗି ଯାଇ ଲାବେଣୀ ଭାଇଭାଗ ଦାବୀ କଲା । ଭଲ ଲୋକ ନିଷ୍ପତ୍ତିରେ ସେ ଯୋଉଠୁ ଚାହିଁବ, ମାଣେ ଜମି ନବ, କଥା ହେଲା ।

ଭାତ ହାଣ୍ଡି ଜମି ମାଣକ ଲାଗି ଲାବେଣୀ ଅଡ଼ି ବସିଲା । ନେଲା ! କଚେଇ ମୁହଁକୁ ନ ଚାହିଁ ତାର ଶସ୍ୟ ପକ୍ଷକୁ ବିକିଦେଲା । ଏତିକିରେ ମଦାଶର ଅଣ୍ଟା ଭାଙ୍ଗିଗଲା ପରି ଲାଗିଲା । ଚାରି ମାସକୁ ଧାନ ନଅଣ୍ଟ ପଡ଼ିଲା । ପ୍ରତି ବର୍ଷ କଣ୍ଟି କଣ୍ଟି ଜମି ବିକିବା ଫଳରେ ମଦାଶ ତଳକୁ ତଳକୁ ଗଲା ।

Digitized by srujanika@gmail.com

ସମୁଦ୍ରଙ୍କୁ ଚୁପ୍ ଚୁପ୍ ତା କଥା କହୁଁକହୁଁ ପଚାରିଲି—ମଦାଶୀ ଭାଇନା, ସଂସାର କେମିତି ଲାଗୁଚି ?

ମଦାଶ—"ମୋ ଲାଗି ଏବେ ଆଉ ତାର କି ସୁଆଦ ଅଛି ? ଅଭାଗୀ ଲୋକର ଦୁଃଖରୁ ବଳି ଦୁଃଖ ନାହିଁ । ହାଣ୍ଡି ମାଙ୍କଡ଼ଚିତ୍ର ମାରୁ-ଥିଲାବେଳେ କଣ କିଛି ସୁଖ ଲାଗେ ?

ସୁଖର ଦିନ ଘୋଡ଼ାରେ ଛୁଟିଗଲା; ଦୁଃଖର ଦିନ ଅସରନ୍ତି । ମୁଁ ଆଉ କାହିଁକି ବଞ୍ଚିଛି, ବୁଝିପାରେ ନାହିଁ । କେଉଁ ସୁଖଶିଖ ଦେଖି କେଜାଣି, ବେଳେବେଳେ ଜୀବନ ପ୍ରତି ଲୋଭ ଆସେ; ମରିବାକୁ କିଏ ଭଲପାଏ କି ?"

କିଏ ଗାଁ ମଝିରେ ଶଗଡ଼ ଦଉଡ଼େଇ ନଉଥିବା ବେଳେ ମିଛୁ ପାଟି କରି ଉଠିଲା—ତୁମେ କୋଉ ମଉଜାର ଶଗଡ଼ିଆ କିଓ ? ପିଲାଏ ଖେଳୁଛନ୍ତି; କଅଁଳା ବାଛୁରୀଟାଏ ଝପଟ ମାରୁଛି । କାହା ଉପରେ ମାଡ଼ିଯିବ କଣ ହବ ! ତୁମ ମନରେ ଟିକିଏ ଡରଭୟ ନାହିଁ ?

ଏ ଆକଟ ପରେ ଶଗଡ଼ିଆ ଓହ୍ଲାଇ ପଡ଼ି ମହଣ୍ଡା ମୁହଁ ଧରି 'ଆସ୍ତେ ଆସ୍ତେ ବଳଦ ଅଡ଼େଇ ଗାଁ ପାରିହେଲା ।

ଏତିକି ବେଳେ ଗାଈଗୋଠ ଫେରିଲେ । କାଳୀ ଗାଈ ପିଠିରେ ବସି ଗାଈଜଗା ଟୋକା ବେଣୁଆ ଗାଉଥିଲା—

'ସଖୀ, କିଏ ପୋଡ଼ିଦେଲା ରେ
ନିକୁଞ୍ଜ ବନକୁ ମୋର
ଆହା···କିଏ ପୋଡ଼ିଦେଲା ରେ
ଆହା······'

ସଭିଏଁ ହସି ହସି କହିଲେ—ଏଡ଼େ ଟିକେ ଟୋକାର ସଖୀ ଅଛି ? ନିକୁଞ୍ଜବନ ଅଛି ?

ମିଛୁ—ଯାହା ଗୀତଟାଏ ଗାଉଛି, ସେ କି ବୁଝେ ତାର ମାନେ !

Digitized by srujanika@gmail.com

## ॥ ପାଞ୍ଚ ॥

କଥାର କଥା
ଭାଇ ମହାରଥା
ଷୋଳଖଣ୍ଡ ସଉଳ ମାଛରୁ
"ଲାଞ୍ଜଖଣ୍ଡି ପଡ଼ିଲା କି ମୋ ଭାଗରେ ?
ଘଇତା ପଗୁରିଲା ରାଗରେ
ଆଉ ମାଛ କାଇଁ ?"

ଭାରିଯା ତ ଦେଇଚି ଖାଇ
କହିଲା—ହିସାବ ଶୁଣ, କହୁଚି ମୁଇଁ
ଷୋହଳ
ଦିଖଣ୍ଡି ନେଲା ନେଉଳ ।
ଆଉ ରହିଲା ଚଉଦ
ଦି ଖଣ୍ଡ ନେଲେ ଫଉଜ ।
ଆଉ ରହିଲା ବାର
ଦି ଖଣ୍ଡ ଗଲା ନଈ ସେ ପାର ।
ଆଉ ରହିଲା ଦଶ
ଧୋଉ ଧୋଉ ଖସ୍ ।
ଆଉ ରହିଲା ଆଠ
ଦି ଖଣ୍ଡ ଦେଇ କିଣିଲି କାଠ ।
ଆଉ ରହିଲା·ଛଅ
ଦି ଖଣ୍ଡ ଖାଇଲା ଘରର ପୁଅ ।

Digitized by srujanika@gmail.com

ଆଜ ରହିଲ ଗୃଣ
ଦ ଖଣ୍ଡ ଗଲା ବନ୍ଧୁ ବେଘର ।
ଆଜ ରହିଲା ଦୁଇ
ଖଣ୍ଡେ ଖାଇଲା ଉଇ ।
ଆଜ ରହିଲା ଏକ୍
ବଗଡ଼ ଖାଇଲା ଦେଖ୍ ।

ସଞ୍ଜୁ—ସମୁଦ୍ର, ମାଇପୀ ଭିତରେ ଏମିତି ଓଲେଇ ଅଛନ୍ତି ! ଦେଖୁଚ, ଲୋଭରେ ସବୁତକ ମାଛ ଗିଳି ଦେଇ କେତେ ଆଳ ଦେଖଉଚି ସେ ଛଇଛଠକୀ ! କଣ କହିନାଇଁ —

'ଅଖାଇନାମୀ, ସବୁ କାଟେଣୀ
ବସିଥାଇ ଚୂଲି ମୁଣ୍ଡରେ
ଘଇତା ଆସିଲେ ସକେଇ କାନ୍ଦେ
କଣ୍ଟା ଦେଇନାଇଁ ତୁଣ୍ଡରେ !'

ମିଛୁ—'ବୁଢ଼ା ଚୁଙ୍ଗୁଡ଼ି' ଗପରେ କଣ ନାଇଁ ? ବୁଢ଼ୀ ଗୁଖୁ ଗୁଖୁ କେମିତି ସବୁତକ ଚୁଙ୍ଗୁଡ଼ି ଝୋଳ ଖାଇଦେଲା ! ବୁଢ଼ା କାଳେ ମାଡ଼ ଚଢ଼େଇବ—ଏଇ ଭୟରେ ନିଜ ପିଣ୍ଡୁରୁ ମାଉଁସ ଖଣ୍ଡେ କାଟି ଝୋଳ କଲା । ବଗଡ଼ ଧରା ନ ପକେଇ ଥିଲେ ବୁଢ଼ା ମଣିଷ ମାଉଁସ ଖାଇ ଦେଇ-ଥାନ୍ତା । ସେ ରାଗରେ ବୁଢ଼ୀକି ପୋଖରୀ ଭିତରକୁ ଫିଙ୍ଗିଦେଲା । ତୁଣ୍ଡ ଲାଳସା ଇ ଶେଷକୁ ତାର କାଳ ହେଲା ।

ସଞ୍ଜୁ—ଏ ସବୁ ଗପ; ଓଡ଼ିଆ ଘରଣୀ ପ୍ରକୃତରେ ଏମିତି ନୁହେଁ । ସେ ଘଇତା ଆଉ ପିଲାପିଲିଙ୍କୁ ସବୁତକ ତିଅଣ ଭଜା ବାଢ଼ିଦେଇ ଆମ୍ବୁଲ ହାଣ୍ଡି ଦରାଣ୍ଡେ ।

ମିଛୁ—ଏ କଥାଣିଠାଏ, କିନ୍ତୁ ମିଛ ନୁହେଁ । ତା ଶିରାପ୍ରଶିରାରେ ସତ ଲୁଚି ରହିଥାଏ । ଏମିତି କେତେ ସବାଖାଇ ମାଇପୀ ଅଛନ୍ତି ।

Digitized by srujanika@gmail.com

ସ୍ତ୍ରୁ ଭୁଷର ଗୁଣଗୁଣ ଗିଳନ୍ତି । ଯାଉଣୁଆସୁଣୁ ସେଇ ଓଳେଇ ଝକଲୀ-ମାନେ କିଛି କିଛି ପାଟିକି ପକାଉଥିବେ ।

ସତୁ—ଏ ପକ୍ଷପାଖ ଲୋକର କଥା କମ୍ପା କଉତୁକରେ ଏପରି କୁହାଯାଇଛି । ଘରଣୀ ସବୁ ଖାଇବାକୁ ବସନ୍ତେ, ଘରେ ଆଉ କେହି ସୁଆଦିଆ ଦ୍ରବ୍ୟଟିଏ ଖାଇବାକୁ ପାଆନ୍ତେ ନାହିଁ । କାଁ ଭାଁ ଗୋଟେଅଧେ ସବୁଗିଳୀ ଅସୁରୁଣୀ ଥିବେ । ସେଥିଲାଗି ପହିଲପାଳ ଗଲାପରେ ବୋହୂର ଓଳେଇଝାଉକାପଣର ପରଖ ହୁଏ । ସେମିତି ଅଣ୍ଡିରାଙ୍କ ଭିତରେ କଣ ଅସୁର ନାହାନ୍ତି ?

ମିଛୁ—ଏ ସେତିକି ଥାଉ । ଚାଲ ସମୁଦ୍ର, ଏଥର ଗାଁର ବାକିତକ ବୁଲି ଦେଖିବା ।

ଏ ଗୁହିଁ ବଳିଆ ଘର । ଗୁହିଁ ବଳୀ ଦି ଭାଇ । ଜାଆଁଳା । ଏକା ପରି ଦିଶନ୍ତି । ଯାଙ୍କୁ ଦେବ କି ତାକୁ ଆଣିବ । ଏକାବେଳକେ ଏକା ସ୍ୱରରେ ହସନ୍ତି ବା କାନ୍ଦନ୍ତି ଦିଜଣ । ଏକାବେଳେ ବାଟକୁ ଗଲେ ଦୁହେଁ ଯାକ । କେତେବେଳେ ଆସନ୍ତି, କେତେବେଳେ ବା ଯାନ୍ତି । ଗାଁ ଲୋକଙ୍କ ସଙ୍ଗେ ପ୍ରାୟ କିଛି ସମ୍ପର୍କ ନ ଥାଏ ।

ତାପରେ ଅଗଣି ନନ୍ଦର ଘର, ଅଗଣି ମାନେ ମଣିଷରେ ଯେ ଗଣାଯାଏ ନାହିଁ । ଉପର ଭାଇ ବା ଭଉଣୀ କଏ ନଷ୍ଟେ ମରନ୍ତି । ଯମ ଦାଉରୁ ବାହି ପାଇବା ଆଳରେ ଏ ନାଆଁ ଦିଆଯାଇଛି, ପ୍ରକୃତ ପକ୍ଷେ ସେ ମଣିଷରେ ଗଣା ହେଲେ ବି । ନନ୍ଦକୁ କୂଅନନ୍ଦ, ପଥର ନନ୍ଦିଆ ବୋଲି ଲୋକେ ଠସକରେ କହନ୍ତି । କଲିକତାର କୋଉ ବାଣିଜ୍ୟ ଅଫିସ୍‌ରେ ବେହେରା କାମ କରୁଥିଲା । ଭାରି କୁହାଳିଆ, ବଡ଼ପାଟିଆ । ତାର ଏଇ ଗୁଣ କଲିକତାରେ କିଛି କାମରେ ଆସିଲା ନାହିଁ । ତାର କାହାକୁ କଣ କହିବାର ଥାଏ ? ସେ ବଡ଼ ପାଟିକରି କହିଲେ ଲାଗେ—ଫମ୍ପା ମାଠିଆରେ ପବନ ପଶି ବାହାରି ଆସୁଛି ।

Digitized by srujanika@gmail.com

ଗୃହକର୍ତ୍ତା କାଳ ସରିଲା ପରେ କିଛି କଞ୍ଚା ପଇସା ହାତରେ ଧରି ଝେଙ୍କ ନନ୍ଦ ଗାଁରେ ଆସି ରହିଲା । ନ ଥିଲା ମହଲରେ ତା ହାତରେ ବହୁତ ଧନ, ପାଠିଠା ବହୁତ ବଢ଼ିଗଲା । ଲୋକେ ସେ ପାଠିକି ମୂଲ୍ୟ ଦେଉଥିଲେ ।

ଉପରବେଳା ପଶା ପାଳିଟିଏ ଧରି ସେ ଗୃହକୁ ଯାଏ ଦୋଳବେଦୀ ଉପରକୁ । ସେଠୁ ତା 'କଚେ ପୁଅ ବାର' ଡାକରେ ଗାଁ କମ୍ପେ ।

ଅଗଣି ନନ୍ଦର ଗୃହର ପୁଅ, ମଝିଆଁର ବି. ଏ. ପାଶ୍ । ସେ ପଡ଼ୋଶୀ ଗାଁକୁ ପୁଅ ହେଇଗଲା । କିନ୍ତୁ ପୁଅପଣ ହୋଇ ନ ଥିଲା । ତା ମୁଣ୍ଡକୁ ହାତ ପାଇଲା ପରେ ସେ ବାପ ସାଙ୍ଗରେ କଳି କରି ନିଜ ଭାଗ ଜମିକୁ ବିକି ଦେଇଗଲା । ଆଉ ଯାହା ଜମି ରହିଲା, ଭାଗ ଦେଲାରୁ ଅଗଣିର ବର୍ଷକ ଚଳିଲା ନାହିଁ । କରଜ କରିବାକୁ ପଡ଼ିଲା । ଜମି ବିକା ତାକୁ ଶୁଝିଲା ।

ଏତିକିବେଳେ ବଡ଼ ପୁଅର ବେକାର ମୁଣ୍ଡରେ ଭୂତ ପଶିଲା । ଦୋଡ଼ବେହି ରାଧୁ ମାଷ୍ଟରର ଯୁବତୀ ସ୍ତ୍ରୀ ପାଲରେ ସେ ପଡ଼ିଗଲା । ମାଷ୍ଟର କାନ୍ଧରେ ଗୋଟେ ଷ୍ଟେଥୋସ୍କୋପ୍ ପକାଇ ଗାଁକୁ ଗାଁ ଡାକ୍ତରୀ କରି ବୁଲୁଥିବା ବେଳେ ଘରେ ଲାଗିଥିଲା ଏ ଲୀଳା । ରାଧୁ ମାଷ୍ଟରର ଉପୁରି ଧନ ଘରେ କିଛି କିଛି ପଶୁଥିବାରୁ ଗରିବ ଅଗଣି ପୁଅକୁ ଆକଟ କରୁ ନ ଥିଲା । ଦିନ ଓପାସିଆ ଦେହରୁ ସାର ଝୁଣି ନେଲା ପରେ ସେ ଉଦଣ୍ଡୀ ଯୁବତୀ ଆଉ ତାକୁ ପାଖରେ ପୂରେଇଲା ନାହିଁ । ସେ ଆଉ ଗୋଟେ ରସରସିଆ ଟୋକାକୁ କବଳକୁ ଆଣିଲା ।

କୁଆଡ଼ୁ କେଜାଣି, ରାଧୁଆର ଦି ପୁଅ । ବଡ଼ର ବୁଦ୍ଧି ଫିଟିଲା ନାହିଁ । ସେ ଗାଈ ଚରେଇ ଯାଏ । ବୟସ ହେଲାପରେ ତା ମୁଣ୍ଡରେ ବାଡ଼ୁଅ ପାଣି ପଡ଼ିଲା । ବୋହୂ ପହିଲି ପାଳି ଅଇଲା । ତା ସହିତ କି କାରବାର କରିବାକୁ ହବ, ପୁଅ ବୁଝି ନ ପାରିବାରୁ ବଡ଼ ବୋହୂ ଆଉ ଶାଶୂଘରକୁ ଫେରିଲା ନାହିଁ ।

ସାନଟା ବାଳୁଙ୍ଗା । ରାଧୁଆ ଆଖି ବୁଜିଲା ପରେ ଚଲାକୀଚତୁର ସାନ ପୁଅ ହାତରେ ସାତ ହଜାର ଟଙ୍କା ପଡ଼ିଲା । ଏତେ ଟଙ୍କା ଦେଖି

Digitized by srujanika@gmail.com

ଙ୍କା ମୁଣ୍ଡ ବଗିଡ଼ ଗଲା । ସେ ମାଆଙ୍କୁ ମାଡ଼ ଚଢ଼େଇଲା । ଠଙ୍କାତକ ହାରି ଲମ୍ବି ମିଠେଇ ଖାଇ ଉଡ଼େଇ ଦେଲା । ତାପରେ ସେ ମାଆର ଅଲଙ୍କାର ଚୋରି କରି ନିଶା ଖାଇଲା, ଜାଗୁଳେଇ ଠାକୁରାଣୀଙ୍କ ସୁନାମୁକୁଟ ଚୋରି କରି ଗାଁବାଲାଙ୍କ ହାତେ ଛେଚା ଖାଇଲା ।

ତାପରେ ସେ ଥରକୁ ଥର ମାଆଙ୍କୁ ହାଁ ଛେଚିଲା । ମାଆ ସହି ନ ପାରି ଗାଁରେ ଫେରାଦ୍ ହେଲା । ଭଲଲୋକେ ବସି ତାକୁ ଗାଁରୁ ନିକାଲି ଦେଲେ । ସେ ଦି ଗାଁ ମଝିରେ ଖଣ୍ଡେ ଚାଳିଆ କରି ରହିଲା । ପେଟ ପୋଷିବା ଲାଗି ମୂଲ ଲାଗିଲା ।

ମାଆର ସ୍ନେହକୁ ଦେଖ—ଚୋରିଆଡ଼ ନିଶୂନ ହେଲେ ସେ ଭାତ ତିଅଣ ଧେନି ନିତି ନିତି ସଞ୍ଜ ଆସେ । ପୁଅ ବଦଳି ଗଲା ପରି ଲାଗିଲା । ଗାଁବାଲାଙ୍କ ଆଗେ ଗୁହାରି କରି ମାଆ ପୁଅକୁ ଫେରାଇ ଆଣିଲା ।

କେତେ ଦିନ ପରେ ମାଆ ପୁଣି ମାଡ଼ ଖାଇ ଗାଁ ପଞ୍ଚାୟତରେ ଫେରାଦ୍ ହେଲା । ତା ଦଇନ ପ୍ରତି କେହି କାନ ଦେଲେ ନାହିଁ । ଏବେ ମାଆ ପୁଅ ଭିନେ ହୋଇ ଚଳୁଛନ୍ତି । ଏଇଠି ଏ ପାଲା ଶେଷ ହେଲା ପରି ଲାଗେ ।

ଶ୍ୟାମବାବୁ ହେଡ୍‌ମାଷ୍ଟର, ହାତେ ମାପି ଚାରିଖଣ୍ଡେ ଚାଲନ୍ତି । ଏମିତି କଥା କହନ୍ତି ଯେ ସାପ ମରିବ ନାହିଁ କି ବାଡ଼ ଭାଜିବ ନାହିଁ । ନିଜେ ସତର୍କ, ଲୋକଙ୍କୁ ସଦା ସତର୍କ କରୁଥାନ୍ତି—ସଂସାର ବିପଦପୂର୍ଣ୍ଣ । ପାହୁଣ୍ଡ ଜଗି ନ ଚାଲିଲେ କଚଡ଼ା, ଚମ୍ପୁଡ଼ା, କାମୁଡ଼ା, କାନରଗଡ଼ା ଖାଇବ ।

ମୁହଁକୁ ଚାହିଁଦେଲେ ସେ ସତ କହୁଛନ୍ତି, ବିଶ୍ବାସ ଜନ୍ମେ । କିନ୍ତୁ ଯୁଆଡ଼ୁ ବର୍ଷା ହୁଏ, ସେ ସିଆଡ଼କୁ ଛତା ଦେଖାନ୍ତି । ଉପରିସ୍ଥ ହସିଲେ ହସ ନ ମାଡ଼ୁଥିଲେ ବି ହସନ୍ତି । ହାଓ୍ବାକୁ ଚାହିଁ ତାଙ୍କର ଗତି ।

Digitized by srujanika@gmail.com

ସଂସାରରେ ଯାହା ହବା ହଉ ଥାଉ, ନିଜେ କେମିତି ବିପଦରେ ନ ପଡ଼ିବେ, ସେ ଚେଷ୍ଟା କରୁଥାନ୍ତି ।

ସେ ନିଜ ଭିତରଟାକୁ ଲୁଚାଇବାକୁ ବହୁତ ଚେଷ୍ଟା କରନ୍ତି । ଏତେ ଦିନ ତାଙ୍କ ସାଙ୍ଗେ ମିଶି ଜାଣିପାରି ନ ଥିଲି ? ଲୋକସେବା କାର୍ଯ୍ୟ ଲାଗି ଯେତେବେଳେ ସେ ଦରମା ମାଗିଲେ, ସେତେବେଳେ ବୁଝିଲି— ଜୀବନଯାକ ଦରମାଖିଆ, ବିନା ଦରମାରେ କାମ କରିବା କଥା ସେ କଳ୍ପନା କରିପାରନ୍ତି ନାହିଁ । ପଚାରିଲି—ଅବସର ଜୀବନ କେମିତି କଟୁଛି ?

"ଇଚ୍ଛା ହେଲେ ବସୁଛି, ଶୋଉଛି, ଖବରକାଗଜ ପଢ଼ୁଛି । ବହୁତ ଖଟିଛି, ଆଉ କାହିଁକି ? କିଏ ମୋର ମାଗଣା କରୁଛି ଯେ ମୁଁ କାହାର କରିବି ?"

ଗଜ ମାଷ୍ଟ୍ରେ—ଓଳଗା (ଓଳୁଣି)ର ପୂର୍ବାବସ୍ଥା ଗଜ, ଯମକୁ ଜିଣିବା ପାଇଁ ଏ ନାମଟି ଦିଆ ହୋଇଛି । ଆମ ଗାଁରେ ପ୍ରବାସୀ ସେ, ଘରେ ଘରେ ପାଳି କରି ଖାଆନ୍ତି । ମୋହମୁଲଜାରେ କାହାକୁ କିଛି କହି ପାରନ୍ତି ନାହିଁ । ସମସ୍ତଙ୍କ ମୁହଁ ରଖି ଚଳନ୍ତି । ତାଙ୍କୁ ନ୍ୟାୟପଞ୍ଚରେ ବସେଇଲେ ଯାଆଡ଼କୁ ପଦେ, ସ୍ୟାଡ଼କୁ ପଦେ କହନ୍ତି । କିଏ କାଲେ କଣ କରିବ, ମନରେ ଭୟ । ସେ କହନ୍ତି—କାହିଁକି କୁଆଡ଼କୁ ପଦେ କହିବି, ଜାଣି ଜାଣି ଅଡ଼ୁଆ ଭିତରେ ମୁଣ୍ଡ ପୂରେଇବି ? ନିଜ ପଛକୁ କଳା ସଜାଡ଼ିବି ? ଯେ ଯାହା କରିବ, ତା ଫଳ ସେ ପାଇବ । ଆମେ ତ ମାଷ୍ଟ୍ରେ ଲୋକ, ଆମର କି ଯାଏ ଆସେ ? ଗାଁରେ ସମସ୍ତେ ଖୁସି ଥିଲେ ଆମର ସବୁ ଠିକ୍ ଚାଲିବ । କାହା ଶିସା ବଙ୍କା ହେଇଗଲେ ସେ ବଙ୍କେଇ ଚାହିଁବ, ହୁଏତ ପାଳି ବନ୍ଦ୍ କରିଦେବ, ନଇଲେ ଉପରିସ୍ଥଙ୍କୁ ଦରଖାସ୍ତ ଦେବ—'ମାଷ୍ଟ୍ରେ ଇସ୍କୁଲରେ ରହନ୍ତି ନାହିଁ, କିଛି ପଢ଼ାନ୍ତି ନାହିଁ; ଗାଁ-ବାଲାଙ୍କ ଭିତରେ କଳି ଲଗାନ୍ତି, ଶୀଘ୍ର ବଦଳି କରାଯାଉ ।' ଏତେ ନବରଙ୍ଗରେ ପଶେ କିଏ ବାବୁ ? ଚୁପ୍ ରହିବ, ନ ହେଲେ ସମସ୍ତଙ୍କ ମୁହଁ ରଖିବ; ସେ ଜାଣନ୍ତି, ଏଥିରେ କାହାରି ପ୍ରିୟ ହୋଇପାରିବ ନାହିଁ, ଅପ୍ରିୟ ବି ହବ ନାହିଁ—ଏ କଥା ସତ ।

Digitized by srujanika@gmail.com

ଭିଲୁ ଦାଶ—ଭିଲୁର ବାପ ଡାକାମୁଡ଼ା କି ବାଲୁଆ ଚେହେରା କିଣି ଦେଖି ଗୋସେଇଁ ମାଆ ଏ ନାଆଁ ଦେଇଥିଲେ, ତାଙ୍କୁ ଜଣା । ଯୌବନ ବୟସରେ ସେ କାହାର କିଛି ଅନିଷ୍ଟ ବା ଅମଙ୍ଗଳ କରି ନାହାନ୍ତି । ଗାଆଁର କୁମ୍ଭାର ସାଇ, ତେଲି ସାଇ, ଚଷାସାଇର ଠାକୁର ପାଣିହିଆ ଭଲ ତ, ସେ ଭଲ । ଯାହା ଗୃହକର୍ମ ଅଭାବ ଅଛି, ଭାଗ ଲାଗେ । କୋଉଠି ସପ୍ତା ବସିଲେ ସେ କାଷ୍ଟାନଷ୍ଟାରେ ସାତଦିନ ଦିପହର ରହି ଭାଗବତ ପଢ଼ନ୍ତି, ବଢ଼ାନ୍ତି ।

ଗାଁରେ କୁଷ୍ଠରୋଗ ନାମରେ ଆତଙ୍କ; ଚଉରଙ୍ଗୀ ଢୋଟିଲା ତ, କଥା ସରିଗଲା; ଭିଲୁ ପିଠିର ଛଉ ଗାମୁଛା ଘୋଡ଼ାଇ ରଖୁଥିଲେ; ଯେତେବେଳେ ଗୋଡ଼ ହାତ ବଙ୍କା ହେଲା, ମୁହଁ ଫୁଲ୍‌କା ଫୁଲ୍‌କା ଦେଖାଗଲା, ଲୋକେ କିଛି ସମ୍ପର୍କ ରଖିଲେ ନାହିଁ । ଭିଲୁ ଦାଶେ ହୋଇଗଲେ ଏକ ଘରକିଆ । କାଳେ ରୋଗ ଡେଇଁବ, ଏଇ ଭୟରେ କେହି କଥା ଭାଷା ବି କଲେ ନାହିଁ । ଏ ଜୀବନ ଅସହ୍ୟ ହେଲାରୁ ଦାଶେ ଯାଇ ବଡ଼ ଦାଣ୍ଡରେ ବସିଲେ, ସକାଳୁ କୋଢ଼ିଙ୍କ ସାଙ୍ଗେ ଧାଡ଼ି ଦିଅନ୍ତି, ଏ ସାଇରୁ ସେ ସାଇ । ଭିକ ଗୃଉଳ ହିକ ମାସକୁ ମାସ ଦାଶେ ଠଙ୍କା ମନିଅର୍ଡ଼ର ପଠାନ୍ତି ।

ଦାଶଙ୍କର ତିନୋଟି ପିଲା—ହେ ଭଗବାନ୍—ଝିଅ ! ଏତେ ନ୍ୟାୟୀ ତ ଭଗବାନ୍, ଭିଲୁକୁ ବଡ଼ରୋଗ ସଙ୍ଗେ କେମିତି ଝିଅ ଦେଲ ? ଏ କୋଢିର ଝିଅଙ୍କୁ କିଏ ବାହା ହେବ ! ଅଭିହାଣ୍ଡ଼ୀ ଏ ଝିଅମାନଙ୍କର ଭବିଷ୍ୟତ କଣ ?

ଶାସନ ଗାଁ ମଝିରେ ବି' ତିନି ଘର ବଟେଇ, ଘରେ ଗୁଡ଼ିଆ—ନାଆଁ ଲୋକେଇ ସାହୁ; ତେରସ୍ତା ବର୍ଷ ମରୁଡ଼ି ପଡ଼ିଲା, ଧାନ ଫସଲ ସମୁଳେ ଧ୍ୱଂସ ପାଇଲା । ତା ଆଗ ବର୍ଷ ଖାଲି ହିଲତକ ପାଇଥିଲା ଧୋଇ । ଗାଁର ଏ ଅବସ୍ଥାରେ ଧାନ ଦେଇ ମୁଢ଼ି ଖାଉଛି କିଏ ? ଲୋକେଇର ବେଉସା ବୁଡ଼ିଲା । ଏତିକି ବେଳେ ରାଣ୍ଡ ଝିଅଟି ଶାଶୁଘରୁ ତଡ଼ା ଖାଇ ଆସି ବାପଘରେ ରହିଲା । ବାପ ଆଖି ବୁଜିଲା । ମା'

Digitized by srujanika@gmail.com

ନାଇଁ; ଘରେ ବଡି ପିଲାର ଭାଇ; ସ୍ବାଙ୍କୁ ପୋଷିବ କେମିତି ? ଏ କାର୍ଲି ମହରଗରେ ଘର କାମ କିଏ କରଉଛି ? କିଛି କାମଧନ୍ଦା ନ ପାଇ ସେ ପେଟ ବିକଳରେ ବାଧ ହୋଇ ଦେହ ବିକ୍ରୀ କଲ; ସେତିକି ଯେସବୁ ଯିବାର ଜଣାଗଲ – ସେଥି ମଧ୍ୟରୁ ଜଣେ ଠାକୁରଙ୍କ ନାଆଁ ବହସାରି ଚିତା କୁଟେଇଚି, ଜଣେ ବହୁକୁଟୁମ୍ବୀ, ସପକ୍ଷରେ ପୁରାଣ ବଖାଣୁଥିବା ଜଣେ ଗାଁ। ଡାକ୍ତର୍, କଲିକତାରୁ ଯୌନ ରୋଗ ଆଣି କଷ୍ଟ ଭୋଗୁଥିବା ଜଣେ 'ଠାକୁର୍' । ମତେ ଆକାଶରୁ ଖସିଲ ପରି ଲଗିଲ । ଏ ସମସ୍ତଙ୍କୁ ମୁଁ ସଚ୍ଚରିତ୍ର ବୋଲି ଜାଣିଥିଲି ।

ଯୋଉମାନେ ଯାଇଆସି ପଦୁଆଁର ଅରମା ଦୁଆର ଘାସ ମାଡ଼ି-ଥିଲେ, ସେହିମାନେ ହିଁ ଉଚ୍ଚ ସ୍ଵରରେ ଚିତ୍କାର କଲେ—ଗାଁର ତରୁଣମାନଙ୍କ ଚରିତ୍ରକୁ ନିରାପଦ ରଖିବା ଲଗି ପଦୁଆଁକୁ ବଡ଼ ଦାଣ୍ଡକୁ ତଡ଼ିବା ଦରକାର । ତଡ଼ିବା ଆଗରୁ ଜଣେ କୁଟୁଣୀ ପାଲରେ ପଡ଼ି ପଦୁଆଁ କଲିକତା ଗୃଲିଗଲ । ଭଙ୍କାରିଦଳ ବଢ଼େଇବା ଛଡ଼ା ପିଲ ଛନୋଟିଙ୍କର ଆଉ କି ବାଟ ଥିଲ ?

ମଇଳିଆ ଲୁଗା ଗଣ୍ଠିଲିଟା ପଛ ପଟ ମୁଣ୍ଡ ଉପରକୁ ଉଠିଚି, ନାକରେ ଫୁଲଗୁଣା, ନଇଁ ନଇଁ ଗୃଲିଚି ଧୋବଣୀ ବନା ମା; ଏ ଶଙ୍ଖୁଲା ବୋଝ ଆସିଲ କାହାର ? ପେଙ୍କାଳି ଶ୍ରେଣୀ ଜମିଗଲେଣି ପିଲ । 'ପାନ ନବ ପାନ', 'କୋକଲି ଶୁଖୁଆ' ବୁଲ ବିକାଳୀଙ୍କ ଡାକ ମଧ୍ୟରେ ହିଁ ସମୃଦ୍ଧ ପହଞ୍ଚିଲେ ଅନନ୍ତ ପୃଷ୍ଟି ଦୁଆରେ ।

ଅନନ୍ତ ପୃଷ୍ଟି, ଯେ ଗାଁରେ ଠାକୁର ସେବା କରେ, ଠାକୁରଙ୍କ ଜମି ଚୃଷ କରି ଚଳେ, ଯେ ଜଳନ୍ତା ଅଳତିଦାନିକି ନଚେଇ ନଚେଇ ଆଳତି କରେ, ପୂଜାବେଳେ କେତେ ପ୍ରକାର ମୁଦ୍ରା ଦେଖାଏ, କେତେ ନବରଙ୍ଗରେ ଘଣ୍ଟି ବଜାଏ, ନିଜସ୍ଵ ଫୁଲବଗିଚ୍ଚ ନ ଥିଲେ ବି ନାନା ଆଡ଼ୁ ଫୁଲ ଯୋଗାଡ଼ି ରାଧାକୃଷ୍ଣଙ୍କୁ ଫୁଲରେ ବେଶ କରେ, ଯେ ଅମୃତ-ହିତା, ବନା ଘିଅ ମସଲରେ ସେ ଠାକୁରଙ୍କର ଯୋଉ ଭୋଗ ରାନ୍ଧେ, ତାକୁ ସାତ ଦିନର ମଳୁ ଖାଇ ଉଠି ବସିବ, ସେ ଗ୍ରେର ପୁଅଟା

Digitized by srujanika@gmail.com

ହାତରେ ଠାକୁରସେବା ଦାୟିତ୍ୱ ଦେଇ  ଦାଦନ ଶ୍ରମିକଙ୍କୁ ଗନ୍ଧ ଖୁଆଇବା ଲାଗି ଗାଁଅ ଗଲେ ।

ଛ' ମାସରେ ଅବସ୍ଥା ସରଗଲା । ମକୁନ୍ଦା ଖେଇ ବେମାରରେ ପଡ଼ି ମଲା; କେତେ ଗଣ୍ଡି ଠାପୁଆଙ୍କ ଗଣ୍ଡି ଭାଙ୍ଗଗଲା; ଗାଁରେ ଠକାଠକ କାମ ଚଳେ, ଗୋଠବସ୍ତା ବା କଣ୍ଠାରେ ଗପସପରେ ବେଳ କଟିଯାଏ, ଅଭ୍ୟାସମତେ ହାତ ଗୃଲେ, ବାଧେନାହିଁ । ଜଗୁଆଳୀ ସାଆନ୍ତଙ୍କ ପାଟି ଦେବସୁଦ୍ଧା, ମର୍ମକୁ ଲାଗେନାହିଁ । ଏଠି କିନ୍ତୁ ହାଡ଼ଭଙ୍ଗା ଶ୍ରମ, ଟିକଏ ଖିଲାପ ହେଲେ ଅବଧାନ ମାଡ଼, ନଆଁ ପରି ଲାଲ୍ ଆଖି ଗୃରଆଡ଼େ ଜଳେ । ବନ୍ଧୁକ ଧରି ଜଗୁଆଳୀ ବୁଲେ, ପଳାଇବା ଚେଷ୍ଟା କଲେ ମାରି ପୋତି ଦିଅନ୍ତି । ଦରଓପାସିଆ, ବେମାରିଆମାନେ ବଚର ବଚର ହୋଇ ଜଗୁଆଳୀକି ମୋଟା ଲାଞ୍ଚ ଦେଇ ରାତି ଅଧରେ ଦିନେ ଖସି ଗଲେ । କଙ୍କାଳଆ ମୋ ପଡ଼ୋଶୀ ବିଶେଷତଃ ଅନନ୍ତ ପୂଝାରୀଙ୍କୁ ଦେଖି ମୋ ଆଖିରେ ଲୁହ ଆସିଗଲା—ଏଣେ ଗାଁରେ ଯାହା ଯୋଉଠୁ ଆସୁ ହଉ-ଥିଲା, ସବୁ ଉଜୁଡ଼ିଗଲା; କଣ କହନାଇଁ—

'ବହୁତ ଖାଇବି ବୋଲି ବାରଣାସୀ ଗଲା
ଆପଣା ସେରକ କୁକୁରଆକୁ ଦେଲା ।'

ଏ ସେମିତି କଥା । ଏଇ ଓଭଗିଆ, ମରୁଡ଼ଆ, ମଶାଣିରୁ ଉଠି ଆସିଲା ପରି ଦିଶୁଥିବା ଦଳଟି ଫେରିବା ଆଗରୁ କେତେଥର ଏଇ ଗୀତଟି ମୋ କାନରେ ବାଜଥିଲା—

'ଚମ୍ପାଫୁଲଟିଏ ପାଇଲି ବନ ହଳଦିମସ୍ତେ
ଶିବ ଦରଶନ କରିବି କାନ୍ତ ଆସିବାଯାଏ
ମାଳ ବଦନକୁ ନ ଦେଖି ଦେବେ ପଶିଲି ଦକା
ଘରର ଶ୍ରୀମୁଣ୍ଡ ନ ଥିଲେ ନିଦ ନ ମାଡ଼େ ଏକା ।'

ତା ପର ଘରେ ଗେଟମ୍ ଦାଣ—ଟୋକେ ଚଡ଼ାନ୍ତି—

'ଗେଟମ୍ ଦାଶେ
ପାଣିରେ ପଡ଼ିଲେ ମାସେ

Digitized by srujanika@gmail.com

ପାଣି ହେଲା ହମ କାକର
ବାଗେ ହେଲେ ବୁଢ଼ା ମାଙ୍କଡ଼ ।'

ବାଗେ ଗମ୍ବ୍କ ବସ୍ତ୍ର କଣ୍ଟ ନ କହ ଖସିଯାନ୍ତି; ଚଢ଼ିଲେ ବେଶୀ ଚଢ଼େଇବେ—ଏ କଥା ସେ ଜାଣନ୍ତି ।

ଲମ୍ବ ଅଢ଼େଇ ହାତ; ତାଙ୍କୁ ଗୃହିଁ ଗେଟମୀଟିଏ ମିଳିଥିଲେ ଲୋକେ ଦଇବଙ୍କୁ ଧନ୍ୟ ଧନ୍ୟ କହୁଥାନ୍ତେ । କିନ୍ତୁ ମିଳିଲା ନଶୁଣୀ ପର ପାଞ୍ଚହାତିଆ ମାଇପୀଟିଏ । ପୁଅଙ୍କୁ ଗୃହିଁ ଗୃହିଁ ହେଲେ ଛ' ଝିଅ— ରତନଚୂଡ଼ୀ, ଡାଳିପୋହଲା, ଅତସୀ, ଯମୁନାବାଲି, ପଦ୍ମକେଶରୀ, ଚମ୍ପା—ତାପରେ ଦ' ପୁଅ—ଗହମ, ହରଡ଼; ସମସ୍ତେ ଶସ୍ୟ ନାମରେ ନାମିତ—ତାହେଲେ ଲକ୍ଷ୍ମୀ ଘର ଛାଡ଼ି ଯିବେ ନାହିଁ ।

କିନ୍ତୁ ଲକ୍ଷ୍ମୀ ଠାକୁରାଣୀ ଦୁଆର ବାଟେ ଗଲେ ବ ମୁହଁ ମୋଡ଼ି-ଦେଇ ଗଲେ—ମାନେ—ତୁମେ ଏତେ ମଣିଷ ସଂସାରକୁ ଆଣିଲେ ତ ମୋ ଭଣ୍ଡାର ବ ଖାଲି ହୋଇଯିବ !

ଜମି ଅଢ଼େଇ ମାଣ; ଏତେ ପିଲଙ୍କୁ କେମିତି ଚଳେଇବ ? ବାଗଙ୍କୁ ପଗ୍ଗରିଲେ, ସେ କହନ୍ତି—ମୁଁ କଣ ମାଗିଥିଲି ? ଷଠୀ ଯାଚି ଦେଇଛନ୍ତି । ଯାଚିଲା ମାଲ କିଏ ଛାଡ଼େ ? ଯେ ଦେଇଛି, ସେ ବୁଝିବ ନାହିଁ ?

ଏଇ ଆଳାପ କାନରେ ବାଜିଲା କି କଣ, ସିଆଡ଼ୁ ଚମ୍ପା ସାପ ପରି ଫଁ ଫଁ ହୋଇ ଆସି ଚମ୍ପା ମାଆ ଦାଣ୍ଡରେ ଗରଜିଲା—ଆମ ବୋଝ ଆମର; ଏଥିଲାଗି କାହା ମୁଣ୍ଡ କାହିଁକି ବଥଉଚ୍ଛି ?

ମିଛୁ ତ ଜାଣେ; ଗର୍ଜନ ଶୁଣି ସେ ସମୁଦ୍ରକୁ ଟାଣିନେଇ ଆଗେଇ ଗୃଲିଲା ।

ଗୃଲିଲେ ଆଙ୍ଗୁଠି ଫୁଟେ; ଗାଁ-ବାଲା ବୁଝନ୍ତି—ଅର୍ଜୁନା ଆସୁଚି । ବାହ୍ମଣ, ମାହାନ୍ତିଙ୍କ ଗୃଷ, 'ଲଙ୍ଗଳ ଠକ୍ ଠକ୍ ଭିତରେ ଘାସ ।' ଅର୍ଜୁନା ହଳପାଳ, ବଗ୍ଧକଟା ସବୁ ହାତେ ହାତେ କରେ । ଗୋଟେ

Digitized by srujanika@gmail.com

ହେଲେ ଦାଣ୍ଡ ମଣିଷ ପକାଏ ନାହିଁ ! ପରିଡ଼ାଙ୍କର ଓଡ଼େ ଗୃଷ ଯାହା, ଅନ୍ୟମାନଙ୍କର ଦୋଡ଼ ସେଇଆ । ସେ ବିଲ ବାଛିଲେ ବିଲରେ ଗୋଟେ ହେଲେ ଝଡ଼ା ରହେନାହିଁ । ବିଲରେ କୋଉଠି ଗଛ ଅଡ଼ ବହଳ, ବା ପାତଳ ହୋଇ ନୈ ଥାଏ ।

ଅନ୍ୟମାନେ ବହୁ ସାର ପ୍ରୟୋଗ କରନ୍ତ, ପରିଡ଼େ କେବଳ ଗୋବର ଖତ ପକାନ୍ତି । ସେ କେବେ ବିଲକୁ ବାଳୁଙ୍ଗା ଆଙ୍କୁଡ଼ ଯାନ୍ତି ନାହିଁ । ବାଳୁଙ୍ଗା ତ ନାହିଁ, ଆଙ୍କୁଡ଼ବେ କଣ ? ବଆଳ, ଲଘୁ, ସାରଦ, ଯୋଉଠି ଦେଖ—ପରିଡ଼ାଙ୍କ ଧାନ ସବୁଠାରୁ ସରସ । ମାଣ ଅଢ଼େଇ ମାଣ ଜମିରେ ପରିଡ଼େ ପୁରୁଣା ଖାନ୍ତି । ତାଙ୍କ ପରିବାର ଗାଁର ଗୋଟିଏ ସୁଖୀ ପରିବାର ।

ତା ପାଖେ ରଘୁ ବଣିଆଁ, ସୁନା ରୁପା ଅଳଙ୍କାର ଗଢ଼େ, ବନ୍ଧା-ଛନ୍ଦା ବ ରଖେ, ଗାଁର ଥିଲବାଲା ଜଣେ ସେ ।

'ଠକ ନ ଦେଖିଲେ ବଣିଆଁ ଦେଖ' ବୋଲି ଯାହା କୁହାଯାଏ, ତାହା କଣ ଠିକ୍ ? ତୁମେ ଯଦି ସତରେ ତାକୁ ଠକ ବୋଲି ଜାଣ, ତା ପାଖକୁ ଠକ ହବାକୁ ଯାଅ କାହିଁକି ?

ବନ ହଲଦି ନ ବୋଳିଲେ ହଟିଆର ସୁନା ଅଳଙ୍କାର ଧଳା ଦିଶେ, ଘଷାମଜା ନ କଲେ ରୂପା ଅଳଙ୍କାର ଲୁହା ହୋଇଯାଏ, ଏ କଥା ବୁଝିଲ ପରେ ବଡ଼ ଗଡ଼ରେ ଝିଅଙ୍କ ଅଳଙ୍କାର ଗଢ଼େଇବାକୁ ସେଠି ଧାଡ଼ ଦିଅ କାହିଁକି ?

ହଟ ଅଧିକ ଧନସମ୍ପତ୍ତି କରୁ ନ କରୁ, ଶତାଧିକ ଭରି ସୁନା, ପାଞ୍ଚ ସାତ ସେର ରୂପା ଘରେ ସାଇତି ଥିଲ । ଝିଅ ବୋହୂଙ୍କ ଦିହ ଅଳଙ୍କାରର ହିସାବ କିଏ ରଖେ ?

'ଗହଣା ନାଇଲେ ଘୋରେଇ ଗ୍ଭଲ୍' ନୀତିକୁ ତା ଝିଅ ବୋହୂ ଭୁଞ୍ଜି ମଣୁଥିଲେ । ଗହଣାରେ ଦିହର କିଛି ଉପକାର ହୁଏନାହିଁ ।

Digitized by srujanika@gmail.com

ଘୋଡ଼େଇ ଦୃକବ ଯଦ, ଅଳଙ୍କାର ପିନ୍ଧିବ କାହିଁକି—ଏ ତାଙ୍କରି ଯୁକ୍ତି ।

ମେଳଣ ଯାତ୍ରାକୁ ଷଣ୍ଢ ମଣ୍ଡଳୀକୁ ଗଲେ ଦେହରେ ଅଳଙ୍କାର ଗୁଆଣି, ବଣିଆଁ ଘର ମାଇପେ ବାହାର ହୋଇ ପଡ଼ନ୍ତି । ବେଳକାଳ ପ୍ରତି ଆଖି ବୁଜି ଦେଇ ହଟିଆ ତା ଘରରେ ଶୁଇଲେ, ସମ୍ପଦର ନବପତ୍ର ଲାଗି ସେ ରାତିରେ ଶୁଏ ନାହିଁ । ଏପରି ଜାଗରଣକୁ ଡରନ୍ତି ଚୋର; କିନ୍ତୁ ଡାକୁ ? ସେ ତ ଡରେଇ ଗୁନିଆଁ କରି ନିଏ, ମାରିପିଟି ନିଏ ।

ଡାକୁରୁ ଜଣେ ହଟିଆ ବେକରେ ଛୁରୀ ଲଗେଇ ରହିଲା, ଅନ୍ୟ-ମାନେ ମାଇପିଙ୍କ ଦେହରୁ ଅଳଙ୍କାର କାଢ଼ିଲେ । ହଟିଆ ମାଆ ବୁଢ଼ୀ ସେତେବେଳେ କାନ୍ଦି କାନ୍ଦି କହୁଥିଲା—ସବୁ ନିଅ ପଛେ କାହାକୁ ମାର-ନାହିଁ, ମୋ ବାପାମାନେ ।

ହାତରୁ ସୁନା କାଚ କାଢ଼ିଲାବେଳେ ସର୍ଦ୍ଦାର ଗର୍ଜି ଉଠିଲା—ଆଉ, ଆମେ ତ ଘର ମାଇପଙ୍କୁ ରାଣ୍ଡ କରି ଏ ଧନ୍ଦା କରୁଛେ, ଘଇତା ଥାଉଁ ଥାଉଁ ପର ମାଇପଙ୍କୁ ରାଣ୍ଡ କଲେ ଆମକୁ ଦଇବ ସହିବଟିକି ?

ହଟର ଡାହାଣ ହାତର ପାଞ୍ଚ ଆଙ୍ଗୁଠିରେ ପଥରବସା ପାଞ୍ଚଟି ସୁନା ମୁଦି । ଜଣେ ଡାକୁ ବାହାର କଲାବେଳେ ନ ବାହାରିବାରୁ ଆଉ ଜଣେ ଡାକୁ ତା କାନରେ କହିଲା—ସମୟ ନଷ୍ଟ କରନା, ପାପୁଲିଟା କାଟି ଆଣ୍ । ଏ ନିଷ୍ଠୁର କଥା ଶୁଣି କାନ୍ଦିକାନ୍ଦି ହଟ କହିଲା—ମୁଁ କାଢ଼ି ଦଉଚି !

ସୁରକ୍ ପାଇ ଗାଁବାଲା ଉଠିଲାରୁ ଡାକୁମାନେ ବୋମା ଫୁଟାଇ ତା ଧୂଆଁ ଅନ୍ଧାରରେ କୁଆଡ଼େ ଖସିଗଲେ ।

ମୁଁ ସମୁଦକ ହଟିଆ ସଙ୍ଗେ ଦେଖା କରେଇ ପଚାରିଲି—ଏବେ କେମିତି ଚଳୁଛ ?

ହଟ—ଯେମିତି ଚଳୁଥିଲି ସେମିତି; ଡକେଇତ ସିନା କିଛି ଧନ ବୋହିନେଲା, ତା ବୋଲି କଣ ମୋ କର୍ମ ନେଇଗଲା ? ଭାଗ୍ୟ ମନ୍ଦ

Digitized by srujanika@gmail.com

ପଡ଼ିଲେ ଏମିତି ଦୁର୍ଘଟଣା ତ ଘଟେ । ଏଥିରେ ଦବିଗଲେ ଚଳିବ କେମିତି ? ଯେତେ ଲୋକ ହଉ, ଏ ସଂସାରରେ କାହାକୁ ବିପତ୍ତି ଛୁଉଁଛି ? କାହାକୁ ରୋଗବ୍ୟାଧି ନ ହଉଛି ?

ଏ ବାଇକୋଳି ଘର; ବାଇକୋଳି ମାନେ ଯୋଉ କୋଳି ଖାଇଲେ ମଣିଷ ବାଇଆ ହୋଇଯାଏ । ବାଇକୋଳିର ଆଗ ବି ଘାଇ ମରିଛନ୍ତି । ବାଇକୋଳିକ ଯମ ନିଜେ ବାଇଆ ହବା ଭୟରେ ଛୁଇଁ ନାହାଁ । ଭଲ କରିଛି । ଯମଦେବତା ବାଇଆ ହେଲେ ବହୁ ବିଭ୍ରାଟ ଘଟାଇ ଥାନ୍ତା । ଯାହାକୁ ଇଚ୍ଛା ତାକୁ ମାରି ଦିଅନ୍ତା । ବାଇକୋଳି ଉପରେ ଦାଉ ସାଧି ନ ପାରି ଯମ ତାର ଏକମାତ୍ର ପୁଅକୁ ନେଇଯାଇଛି । ଫଳରେ ସଂସାରରୁ ବାଇକୋଳିର ମନ ଛୁଟିଯାଇଛି ।

ଏବେ ନିଜଞ୍ଜାଳୀ, ହରିନାମ ଜପେ । ଅଷ୍ଟପ୍ରହରୀରେ ସେ ନାଚେ, ଏଇ ଦୋହାଟି ବୋଲି—

‘ହରିବୋଲ ଭାଇ ଗୋବିନ୍ଦ ବୋଲ
ଭାସିଲା ପଥର ବୁଡ଼ିଲା ସୋଲ ।’

ଲୋକେ କହନ୍ତି—ନାଁ ବାଇକୋଳି—ସତରେ ସେ ବାଇଆ । ତା ଗତିଗତି ଦୁନିଆଁ ଛୁଉ୍ ! ସେ ଗୋଟେ ବରଗଛକୁ ପୁଅ କରିଚି, ଗାଁର ଆଉ ଜଣେ ବାନ୍ଧ୍ୟ ଓସ୍ତଗଛକୁ ଝିଅ କରିଚି । ଗଛ ଦୁଇଟି ବଡ଼ ହୋଇଗଲା ପରେ ଖୁବ୍ ଆଡ଼ମ୍ବରରେ ବାହାଘର ହେଇଚି । ଗଛ ମୂଳେ ତିଆରି ବେଦୀ ଉପରେ ବସି ପୁରୋହିତେ ମନ୍ତ୍ର ପଢ଼ିଛନ୍ତି, ହୋମ-ନିଆଁ ହୁତୁହୁତୁ ଜଳିଚି । ମଣିଷ ଲାଗି ଯୋଉ ମନ୍ତ୍ର, ବିଧିବଧି, ଗଛବୃଛ ଲାଗି ବି ସେଇଆ । ଅଗ୍ନିଶିଖା ସାକ୍ଷୀ; ଦି’ଗଛର ଡାଳ ବନ୍ଧା ହେଇ ହାତଗଣ୍ଠି ପଡ଼ିଲା । ଅହ୍ୟ ମାଇପିଙ୍କ ବନ୍ଦାପନା ହୁଳହୁଳି, ପୁରୋହିତଙ୍କ ଆଶୀର୍ବାଦ ଶ୍ଳୋକ, ଯୋଡ଼ି ନାଗରା, ଚେଲଙ୍ଗିବାଜା ଓ ଶଙ୍ଖ ମହୁରୀ ନାଦରେ ଗାଁ କମ୍ପି ଉଠିଲା । ଜାକଜମକରେ ଭୋଜ ହେଲା । ତିନି ଗାଁର ତିନିଶ ମୂର୍ତ୍ତି ବ୍ରାହ୍ମଣ ପୂରିଥିଲେ ।

Digitized by srujanika@gmail.com

ସେ ବି ଗଛ ଏବେ ଝଙ୍କା ହୋଇ ମାଡ଼ିଲଣି । ଥକିଲା ବାଟୋଇମାନେ ମୂଳରେ ଆଶ୍ରା ନଉଛନ୍ତି । ଶଗଡ଼ିଆ ବି ସେଇଠି ଏଇବାସ କରୁଛନ୍ତି । ବାଇକୋଳି ତା ମୂଳରେ କମଳା ପନ ପକାଇ ତିନୋଟି ଦହିପାଣି ହାଣ୍ଡି ବସାଇଛି, ମହାର୍ଦ୍ଧ କୁଣ୍ଡୁଆରେ ଶୋଷିଲାଙ୍କୁ ପରିବେଷଣ କରୁଚି ।

ହରବୋଲପୁର ଗାଁ ମେଳଣ ତା'ର କୀର୍ତ୍ତି । ନାମ-ସଂକୀର୍ତ୍ତନ, ଘଣ୍ଟମାଦଳ, ଛତ୍ରବାସ ବାନା ପଟୁଆରରେ ରଙ୍ଗୀନ୍ ମଣ୍ଡଣି, କଳସଲଗା ଚଉଦୋଳରେ ବସି ଠାକୁରମାନେ ଯେତେବେଳେ ମେଳଣର ଅଧା ପଥରଖଣ୍ଡିମାନଙ୍କ ଉପରେ ବିଜେ ହୁଅନ୍ତି, ବାଇକୋଳିର ଆନନ୍ଦ ଦେଖିବ କିଏ ? ଯେତେ ଦୋଳ ଆସନ୍ତି, ସେ ସମସ୍ତଙ୍କ ପାଖେ ସାଷ୍ଟାଙ୍ଗ ମୁଣ୍ଡିଆ ମାରେ, ସବୁଠି ପାଦୁକ ପାଏ ।

ଠାକୁରମାନେ ଯେତେବେଳେ ମେଳଣ ହୁଅନ୍ତି, ବାଇ ଭେଁ-ଭେଁ କାନ୍ଦେ । ସେ ବିଦାୟ ବ୍ୟଥା ସହିପାରେ ନାହିଁ ।

କାହାର ନିମିତ୍ୟପତ୍ର ହେଲେ ସେ ଘରୁଆକୁ ସାହାଯ୍ୟ କରେ । ତାର କି ମନ୍ତ୍ରାକ୍ଷା କେଜାଣି, ସେ କାହା ଘରେ ଖାଏ ନାହିଁ ।

ଗାଁରେ କିଏ ରୋଗରେ ପଡ଼ିଲେ ସେ ତା'ର ପାଖରେ ବସି ସେବା କରେ । ଲୋକସେବା ତାର ଜୀବନବ୍ରତ । ସେଥିରେ ହିଁ ତାର ପରମ ଆନନ୍ଦ ।

ବି ସମୁଦ୍ର ପାଖେଇ ଗଲୁ; ଅଁଳା ନାଣି ଅଦ୍ଧ୍ୟରାଣୀ ହୋଇ ପଟୁଆରରେ ଗଲା । ଖଇ କଉଡ଼ି ବିଞ୍ଚା ହଉଥିଲା । 'ରାମ୍ ନାମ୍ ସତ୍ୟ ହେ' ଡାକ ଦେଇ ମାଲଭାଇମାନେ ମଶାଣିକି ଆଗେଇ ଗଲେ ।

ଅଁଳା ନାଣି ମଲା ଆଗରୁ ପୁଅମାନଙ୍କୁ କହିଯାଇଥିଲା—ଘାଡ଼ି ତଳେ ତିନି ହଜାର ଟଙ୍କା ପୋତିଛି । ଛ ଝିଅ ଛ ଜୋଇଁଙ୍କୁ ମୋର ତୁଠକୁ ଡାକିବ, ମର୍ଯ୍ୟାଦା ଦବାରେ କାହାକୁ ହୀନିମାନିଆଁ କରିବ ନାଇଁ । ପୁରସ୍ତମରୁ ମହାର୍ଦ୍ଧ ଆଣି ତିନି ଗାଁର ମହାଜନ ଓ ଦୁଃଖୀରଙ୍କୀ-ମାନଙ୍କୁ ଖୋଇବ । କାହିଁରେ ମନ ଊଣା କରିବ ନାଇଁ ।

Digitized by srujanika@gmail.com

ଅଁଳା ନାମ୍ନ ସାଇପଡ଼ଶାର ଭରସା ଥିଲ; ଯୋଗୀ ଭକାଣ୍ଣ ବୈକୁ ଖାଲ ହାତରେ ଫେରୁ ନ ଥିଲେ । ବଭବ୍ରତ, ପୁଣ୍ୟପରବ ଏପରକ ମୃତାହ ହଁ ପୂାର ଯାବକ୍ଷଣ୍ଣ ବଧିବଧାନ ତାଙ୍କୁ ଜଣା ଥିଲ । ଭରବେଭଘର, ଶଙ୍ଖୁଳା ବୋଝ, ସାବଜୀ ଭର ଅଁଳାନାମ୍ନ ଦେଖି ପସନ୍ଦ କଲେ ହେଲ । ଗଲାଂଅଇଲ, ମାନମର୍ଯ୍ୟାଦା, ଓଷାବ୍ରତ, ପୂଜା ବସୁଦେବ, ଠା ପିଡ଼ା ଆଦ୍ଧ ଯାବକ୍ଷଣ୍ଣ ସଂସାର ଚଳଣିରେ ସେ ଓସ୍ତାଦ୍ । ତେଣୁ ଗାଁବାଲ ବହୁତ ଖାତିର ହେଉଥିଲେ ।

କୁମର ଜେନା ମଙ୍ଗଳାଙ୍କ କାଳସୀ; ବଷୁବସଂକ୍ରାନ୍ତି ଦନ ସେ ମେରୁ ଓପାସ କରେ । ମଙ୍ଗଳାଙ୍କ ପାଖ ଲୋକ, କାଳେ ଲଗେଇଲୁ୍‌ଠେଇ କହବ, ଲୋକଙ୍କ ମନରେ ଭୟ । ତାର ବ କମ୍ ଗଉଁ ନୁହେଁ । ହୁକୁମ୍ ଦେଇ ସେ କଛୁ ରୋଜଗାର କରେ । ଯେତେ ଅଭାବରେ ପଡ଼ିଲେ ବ ସେ କାହାର ମୂଲ ଲଗେ ନାହିଁ । ବଷୁବ ଦନ ମଙ୍ଗଳାଙ୍କ ସାମ୍ନାରେ ନଆଁ ଅହ୍ଲଆରେ ଚୂଲବା ବ୍ୟବସ୍ଥା ଆଗେ ସେଇ କଲ । ଯାହା ମନରେ ପାପ, ଶଙ୍କା ଆସେ, ତା'ର ଗୋଡ଼ ପୋଡ଼େ ।

ଓପାସ କରଥିବା ଭକତମାନେ ଜଳନ୍ତା ଅଙ୍ଗାର ଉପରେ ଖାଲ ପାଦରେ ସାତ ଥର ଯିବାଆସିବା କରନ୍ତି, ସେମାନଙ୍କର ରୁମଟିଏ ବ ପୋଡ଼େ ନାଇଁ ।

ହେଇ ଟିକଏ ଦୂରରେ ଦଶୁଚ ମଧୁ ବେହେରାର ଘର । ତା ବେଢ଼ଙ୍ଗିଆ ଚେହେରା ଦେଖି ମୁଁ ତାକୁ ଠସକରେ ଡାକେ ମଧୁକୈଠଭ ବୋଲ । ସେ ବଡ଼ ଅଶାନ୍ତିରେ ଅଛ । ମତେ ଦେଖିଲେ ଏଇଲେ କାନ୍ଦ-ବୋବା କରବ । ତା ଦୁଃଖର ପ୍ରତକାର କରବା ମୋ ପକ୍ଷେ ବା ଆମ ଗାଁର ଆଉ କାହା ପକ୍ଷେ ସମ୍ଭବ ନୁହେଁ ।

ମଧୁ ବେହେରାର ସାନ ପୁଅ ସାଧୁଆ ସଙ୍ଗାତକୁ ସାଙ୍ଗରେ ଘେନ ଜାମୁଚୋଠା ମେଳଣକୁ ଛେନା ବକ ଗଲ । ପକେଟରେ ତନଶ ଟଙ୍କା; ଖତ ଅଧ; ସଙ୍ଗାତକୁ କହଲ—ଏଇଠି ଶୋଇ ପଡ଼ବା, ଗୁଡ଼ ଆଚ୍ଛାକାନ

Digitized by srujanika@gmail.com

ବେଞ୍ଚ୍‌ରେ । ସଙ୍ଗାତ କହିଲା—ମଶାବଣରେ କାହିଁକି ପଡ଼ିବା ? ମୁଁ ତ ସାଙ୍ଗରେ ଅଛି। ତମର କି ଭୟ ? ସାଧୁଆ ତା କଥାରେ ଭଲିଯାଇ ଫେରିଲା । ଅନ୍ଧାର ପକ୍ଷ, ବରଗଛ ଗୁଛରେ ଅନ୍ଧାର ଗାଢ଼ । ସାଧୁଆକୁ କିଏ ଗୋଟାଏ ଧକ୍‌କା ପକାଇଲା । ସେ ତଳେ ପଡ଼ିଗଲାରୁ ଅଧାନକୁ ଲକ୍ଷ୍ୟ କରି ଦି ଗୁରି ଗୋଇଠା ପକାଇଲା । ସଙ୍ଗାତ, ଭୂତ ମତେ ମାରି ପକାଇଲା ! ନିଜେ ସଙ୍ଗାତ ତା ମୁହଁରେ ଅଖାପୁଳାଏ ମାଡ଼ିଦେଇ ଚୋଟିରେ ଠିଆ ହୋଇଗଲା । ତାପରେ ସାଧୁଆକୁ ଓସ୍ତ ଡାଳରେ ଦୌଡ଼ ଲଗାଇବା ଭଙ୍ଗୀରେ ରଖି ଦିଅଗଲା—କିଏ ନା ଦୌଡ଼ ଲଗାଇ ମରିଚି ! କୋଡ଼ିଏ ଟଙ୍କା ଦେଲେ ଚଣ୍ଡିଆ ଧୋବା ମଣିଷଟିଏ ମାରିଦିଏ। ଗାଁବାଲା ସନ୍ଦେହରେ ତାକୁ ଧରି ଆଣିଲେ । ଗଛରେ ବାନ୍ଧି ଚଢ଼ାଇଲେ ମାଡ଼ ।

ପ୍ରାୟ ପ୍ରତି ହତ୍ୟା ମୂଳରେ ଜଣେ ଅସଲ ହନ୍ତା ଥାଏ । ସେ ପଦାକୁ ଜଣାଯାଉଥିବା ହନ୍ତାର ରକ୍ଷାକର୍ତ୍ତା । ସେ ଯାଇ ଥାନାରେ ଇତାଲା କରିଦେଲା । ପୁଲିସ୍ ଫଉଜ ଆସି ଦେଖିଲାବେଳକୁ ଜଣେ ଗଛରେ ବନ୍ଧା ହୋଇଚି, ତା ଉପରେ ଗାଁ ବାଲା ଚଢ଼ଉଛନ୍ତି ମାଡ଼। କାହାରି ଜ୍ଞାନଚେତନା ନାହିଁ । ସେ ମଡ଼ର୍ କରିଛି ବୋଲି କିଏ ଜାଣିଛି ? ହୁଏତ ନିଗ୍ରହ ହୋଇଥିବ, ମରି ଶୋଇବ । ପୁଲିସ୍ ମଗ୍ଣ ମଗ୍ଣ ଦିଅଣ୍ଡା ଟୋକାଙ୍କୁ ଗୃଲାଣ୍ କଲା; ସେମାନଙ୍କୁ ମୁକୁଳେଇ ଆଣିବାକୁ ଲଗିଲା ବର୍ଷେ, ଖର୍ଚ୍ଚ ହେଲା ଦି ହଜାର ଟଙ୍କା ।

ସେ ଧନୀ ଲୋକ ଜଣକ ପୁଲିସ୍‌ର ମନବୋଧ କରିଦେବାରୁ ଧୋବା ହାଜତରୁ ମୁକୁଳିଲା । ସଙ୍ଗାତ ଫେରାର୍ । ମୋ ମଧୁକୈଟଭର ବଳାତ କିନ୍ତୁ ବନ୍ଦ ହେଲା ନାହିଁ । କିଏ କହି ତାକୁ ବୋଧ ଦେବ, ଭାଷା ପାଉନାହିଁ ।

ଏଇ ଯେ କବୁରି କରୁଚି ଧୂଳିଆ ବାରିକ । ସେ ଏବେ ଅଡ଼ି ବସିଚି—ନିମନ୍ତ୍ରଣପତ୍ରରେ ମୁଁ ଆଉ ଭଦ୍ରଲୋକଙ୍କ ଗୋଡ଼ ଧୋଇବି ନାଇଁ, ଅଇଁଠାପତ୍ର ଉଠାଇବି ନାଇଁ; ଆମ ଜାତିଆଣ ସଭା ଆମକୁ ମନା କରିଚି । ନ ମାନିଲେ ଜାତି ଖେକ୍ କରିବ ।

Digitized by srujanika@gmail.com

ଆଗେ ଛତିଶ ପାଠକ ରଜା ବ୍ରାହ୍ମଣଙ୍କ ପଦ ଧୌତ କରିବା ବିଧି ଥିଲା । ସେଥିଲାଗି ଆମେ ଜାଗିର ଜମି ଭୋଗ କରୁଥିଲୁ । ଏବେ ଭଦ୍ରଲୋକ ନାମରେ ବାରଜାତି ତେରଗୋଲ୍ ଉକବ ହୋଇ ଅଇଲେ । ମୋର କଣ ମାନଇଜ୍ଜତ ନାହିଁ ? ମୁଁ ସମସ୍ତଙ୍କ ଗୋଡ଼ ଧୋଇବି ? ଜାଗିର ଜମି ଏବେ ଆମ ନାମରେ ପଟ୍ଟା ହୋଇଗଲାଣି । ମହାଜନଙ୍କ ଗୋଡ଼ ଧୋଇବାକୁ ଆମେ ଆଉ ବାଧ ନୋହୁ ।

ଗାଁବାଲାଙ୍କର ସେବେଇତଙ୍କ ଉପରେ ଆଉ କିଛି ଜୋର୍ ନାହିଁ । ତଥାପି ବଳ ପ୍ରୟୋଗ କଲେ । ଧୁଳିଆ ପୁଲିସ୍‌ରେ ଇତଲା ଦେଲା । ଧନୀ ଜମିମାଲିକଙ୍କ ଜାଗାରେ ଧୂଳିଆ ଖତ ଗଦେଇ ଥିଲା । ସେ ବୋହିନେଲେ ।

ଧୂଳିଆର ପୁଅ ବାହାଘର; ଟୋକା କନ୍ୟାଟିଏ ଆଣିଥାଏ । ଗାଁବାଲା ପୁରୋହିତଙ୍କୁ କହିବୋଲି ବନ୍ଦ କରିଦେଲେ ।

ଏଥର ଧୂଳିଆ ଗୋଟେ କଉଶଳ କଲା, ଦି ଜଣ ପୁରୋହିତ ଆଣି ଜଣକୁ ଘରେ ଲୁଚେଇ ଦେଲା । ବାହାର ବେଦୀରେ ବିଭା ମନ୍ତ୍ର ବୋଲା ହେବାମାନେ ଗାଁବାଲା ସଦଳବଳେ ଆସି ରୋକିଲେ, କିଛି ବଦାକା ଦେଇ ପୁରୋହିତକୁ ବନ୍ଦ କରିଦେଲେ ।

ଏଥର ଧୂଳିଆ କବାଟ କିଳି ପୁଅ ବିଭା କଲା । ଲୁଚିଥିବା ପୁରୋହିତେ ଫୁସ୍‌ଫୁସ୍ ସ୍ୱରରେ ମନ୍ତ୍ର ପଢ଼ି ବିଭା କାର୍ଯ୍ୟ ଶେଷ କଲେ । ମୁହଁ ସଞ୍ଜବେଳେ ବାଡ଼ବାଟେ ଖସି ଚାଲିଗଲେ ।

ଏଇ ଯେ ପଥର ପିଣ୍ଡାରେ ମେଞ୍ଚାଏ ହୋଇ ଲୋକଟିଏ ବସିଛି; ତା କଥା ତ କିଛି କହିଲ ନାହିଁ ସମୁଦି, ସତ୍ତୁ ପଚାରିଲ ।

ଏ ପ୍ରଶ୍ନରେ ମୋ ହୃଦରେ ସକ୍ ଲାଗିଗଲା; ସମୁଦି, ସେ ତ ଗୋଟେ ପୁରାଣ । ତା କଥା ମୁଁ ପରେ କହିବି । ଏବେ ବାର ଉପରେ ଗୋଟେ ହେଲାଣି । ତୁମ ସମୁଦୁଣୀ ଦାଣ୍ଡବାଡ଼ ହଉଥିବେ । ଚାଲ ଖାଇବା । ହେଇ ସେଠି ଗେଲା ମାଉସୀ ଛିଡ଼ା ହେଇଛି, ତା ସାଙ୍ଗେ ଘଡେ କଥା ହେଇ ଯିବା ।

Digitized by srujanika@gmail.com

ଟେଲି ମାଉସୀ ବହୁତ ଗେଲେଇ, ବଡ଼ ଫୁଲେଇ । ତାଙ୍କ ଜୀବନରେ କଣ ଦୁଃଖ ନାହିଁ ? ଧନୀ ହଉ, ଗରିବ ହଉ, ଏ ସଂସାରରେ ଦୁଃଖ ନାହିଁ କାହାର ?

ତାର କଣ କିଛି ଅଭାବ ନାହିଁ ? ସେ କଣ କିଛି ରୋଗ ଭୋଗି ନାହିଁ ? ଗେଲି ମାଉସୀ ଏଡ଼େ ସୁଖୀ କିପରି ? କଥା କହୁ କହୁ ପାନପିକ ବୋହି ଯାଉଚି; ଢଗ ଉପରେ ଢଗ ପକାଉଚି । ହସଖୁସିରେ ଇଡ଼ି ହୋଇଗଲା ପରି ଲାଗୁଚି । ଆଶ୍ଚର୍ଯ୍ୟ, କହିଲି ସତ୍ତୁ ।

ମିଛୁ କହିଲା—ପାଞ୍ଚ ସାତମାଣ ଜମି, ନଜର ସୁନ୍ଦର ସ୍ୱାମୀ, ପୁଅଟିଏ, ଝିଅଟିଏ ଘେନ ସେ ସୁଖୀ । ନିଜକୁ ନଚେଇ ନଚେଇ ସେ ଗୃଲେ, ଗେଲେଇ ଗେଲେଇ କଥା କହେ । ତା ମୁହେଁ ମୁହେଁ ସଂସାର-ଯାକର ଗୀତ, ନାଁଦଆ, ଛିଟା । ପଚାରିଲି—ଗେଲି ମାଉସୀ, ପିଲାଦିନେ ତମକୁ କିଏ କ ନାଆଁ ଦେଇଥିଲେ ?

ଗେଲି ମାଉସୀ ମୁହଁ ଫୁଲେଇ କହିଲା—ପରଗାଁ ଭଦର ଲୋକ ଆସିଛନ୍ତି, ଏସବୁ ଶୁଣି କହିବେ—ଏଡ଼େ ନିଲଜା !

ମିଛୁ—ସେ ମୋ ସମୁନ୍ଧ, ଆମ ଗାଁ ଦେଖି ଆସିଛନ୍ତି; ଭଲ କଥା ଶୁଣିଗଲେ ପଉରଷି କହିବେ—କଣନା ସମୁନ୍ଦଘର ଗାଁକୁ ଯାଇଥିଲି, ଏମିତ ଏମିତ ।

ତଥାପି ଗେଲିର ଦମ୍ କମିଗଲା; ଓଡ଼ଣାଟି ଟାଣିଆଣି ସେ ଆସ୍ତେ ଆସ୍ତେ ଗାଇଲା—

ଜନମ କାଳେ, ଅନୁଡ଼ଶାଳେ, ମାଆ ଦେଇଥିଲେ ଟୋପିଚନ୍ଦନ, ଯାଉଁଳ ଜହ୍ନ, ସରଗ ତରା, ରୂପେଇ ଝୁମ୍ପେଇ ରଙ୍ଗପସରା ।

ବାପା ଦେଇଥିଲେ ପଦ୍ମପିଆଁସା, ତାରେଣୀତାରା, ସାରଆସାସା ।

ଭାଇ ଦେଇଥିଲେ ସୁନାଗଉସା, ଭୁବନେଶ୍ୱରୀ, ଚମ୍ପାଚଉଁରୀ ।

Digitized by srujanika@gmail.com

ଘଉଜ ଦେଇଚ—ଭଲ ଛଠଙ୍କା, ମୁଖଝଂଠଙ୍କା, ସୁନା ଝଲମଲ ଥାଳୀପଠ କ ?

ଭଉଣୀ ଦେଇଚ—ରମଣୀ ରତ୍ତ, ଓଲେଇ ଗେଲେଇ ଦୁଲେଇ ଫୁଲେଇ, ସୁରସବନ୍ଧ ।

ନଣନ୍ଦ ଦେଇଚ—ଲଙ୍ଗଳବାଳୀ, ଉଞ୍ଚକପାଳୀ, ଖାଙ୍କଣକେଶୀ, ଷୋଳସାହସୀ, ଅଗେଣିହାଣ୍ଡି (ଜଳଜଳା ହାଣ୍ଡି), ଶାମୁକାତୁଣ୍ଡୀ, କାଳୀ-କୋତଘ, ହେଁସମୁଭୁଘ, ଗ୍ରେରଣୀଗୁରୁ, ନାଠରଗୁରୁ, ପରଘରଭାଙ୍ଗୀ, ଶୁଖୁଆ ସାରୁ, ଲମ୍ବନଳତା, ସଞ୍ଜିବଳତା, ମହାକାଳ ଫଳ କୋଚଲ ପିତା ।

Digitized by srujanika@gmail.com

## ॥ ଛଅ ॥

"ଜାନୁଘଣ୍ଟ ପରଶୁରାମ୍
କଣ୍ଠେ ତୁଳସୀ ମୁଖେ ରାମ୍
ଚମ୍ପା ତୁଳସୀ ଶାଳଗ୍ରାମ ।"

ଜାନୁଘଣ୍ଟ ପରଶୁରାମ୍ ଡେଇଁ ଡେଇଁ ଗାଆଁରେ ବୁଲୁଥିଲାବେଳେ ଦ'ସମୁଦ୍ର ବାଉରି ସାହିରେ ପଶିଲେ । ଠିକଏ ଆଡୁଆଳକୁ ସମୁଦ୍ରକୁ ଡାକି ମିଛୁ କହିଲୁ—ଆମ ବାଉରାଣୀଙ୍କ ଢଗ ଶୁଣିବ ? ତେବେ କଣ୍ଠି ନ ଜାଣିଲା ପରି ପିଆଡ଼କୁ ଚାହିଁ ରୁହ । ନଇଲେ ତା କଥାର ସୁଅ ବନ୍ଦ ହୋଇଯିବ ! ଶୁଣ—ବାହ୍ମୁଣୀ ନାମକ କାଶିଆ ଭୋଇର ଝିଅ ମଙ୍ଗୁଳୀ କଣ କହୁଛି—

"ଦଶ୍ଟି ଘରେ ଗୋଟିଏ ଭଉଣୀ ଲୋ ନାନୀ, ବାଆ ମତେ ଗେଲବସର କରଥାଇ, ମାଆ ମତେ ଗେଲବସର କରଥାଇ । କୋରଥ ପଇତି ନ ହେଲେ ମୁଁ ଭାତ ଖାଆଇନ ।

ଦିନକର କୋରଥ ନଥେଲା । ମୁଁ ଉଷିଲ । ବା', କାମରୁ ଅଇଲା । ମୁଁ ଉଷିଚ ଦେଖି ଧାଇଁଗଲା । ଅଧ ଡଉଲେ କୋରଥ ଘିଡି ଅଇଲା ଦୋକାନରୁ । ବୋଉ ତାକୁ ଭଜି ଦେଲା । ଚୂରି ଦେଲା । ଜାଉ କରି ଦେଲା ।

ମୁଁ ତ ଗେଲବସର ଲୋ ନାନୀ । ହାପୁଡ଼େ ନଉଥାଇ; କହୁଣୀ ଯାଏ ବୋହି ଯାଉଥାଇ । ବା' ଚାହିଁଲା, ଚାହିଁଲା, କହିଲା—ମୁଁ ଏଡ଼େ ଗେଲବସରରେ ଝିଅ ବଡ଼େଇଚି; ଖରୁନୋରିଆ କରି ଜୋଇଁପଟେ କରିବି !

Digitized by srujanika@gmail.com

ସଡକୁ ସଡ, ଖରୁ ଦେଲୁ, ନୋଉ ଦେଲୁ, ଜୋଇଁଘର କଲୁ । ବଡ଼ ସନମାନରେ ବା'ଘର ହେଲୁ । ଆଲୁଅ ଫୁ କନେ ଜଳ ଉଠୁଥାଇ, ଘୁ କନେ ନଭ ଯାଉଥାଇ ।

ବା'ର ଥିଲେ ବୋଉର ନାଇଁ, ବୋଉର ଥେଲେ ବା'ର ନାଇଁ, ହେଲେ ବାଆ ଅଙ୍ଗ ହରନ୍ଧଆ କର ଖନ୍ଧ ଖଣ୍ଡେ ଦେଲୁ ସେ ଦେଉରଟେ ଘୋରେଇ ଦେଲେ ଦେଉରଟେ ଘୋରେଇ ହେଇ ପଡ଼ବ ।

ଘରକୁ ଗୃହିଁଦଏ ତ ନାନୀ, ଏ ପଟେ କଉଣି, ସେ ପଟେ ଜୁରୁକ । ଭବଲ—ଯା ହଉ, ବା' ବଡ଼ଘର ଦେଖି ଦେଇଚ ।—ଘରେ ଦୂର୍ ଗଣ୍ଡାଏ, ଗୃଡର ଘୁମେ; ଗୃରଯାକ ବାଉଁଶବେଣ୍ଟିଆ ଦାଆ ମାରକୁ ମାର । ମନେ ମନେ ଭବଲ—ବା', ମତେ କଣ ଦେଖି ଦେଇନ ! ମୁଠେ ମିଳବ ।

ଭାଇବେହେଉ ବଇଥାଆନ୍ତ, ହେଁସ କାନରେ ବଇଥାଆନ୍ତ । ଧୂଆଁ ତର ପଡ଼ଥାଏ । ସମତେ କହଲେ—ପିଠା କର ।

ଜା କହଲୁ—ମତେ ଆସେଇନ, ମୁଁ କହଲ—ମତେ ଆସେଇ ।

ହାଣ୍ଡିଏ ଗୃଉର ଚୂନା ଜନ୍ତଦେଲ । ଅନାମତ ଯୋଉଏ ନାର ନଡ଼ଆ କୋରେଇ ଦେଲ । ବେଭୁଲରେ ବେଭୁଲଏ, ଚୌକେଇରେ ଚୌକେଇଏ ପିଠା କର ଥୋଇଦେଲ ।

ଭାଇ ବେହେଉ ବସି ପଇଲେ । ଯାହାକୁ ଯୋଉ ବଉଦରେ ପରଷି ଦେଲ । ପୁରେ ଖାଇ ଦ'ପୁଉ ଖାଇ ତନ ପୁଉ ବେରକୁ ପୁର କହୁଚ—ପଅଚ ।

ସମତେ କହଲେ—ଏ ପିଠା କଏ କରଚ ? ମୁଁ ନାଜ ନାଜ କରୁଥାଇ, ଗୃଞ୍ଜ ବାର ପାଖେ ଆଉ ନହଇ ଠିଆ ହେଇଥାଇ । କହଲ—ମୁଁ ।

Digitized by srujanika@gmail.com

ଭଇବେହେବା କହିଲେ—ହାଁ-ହାଁ, ତରମାର ଝିଅ ନ ହେଲେ ଏ ପିଠା କଏ ସେ କରନ୍ତା ?

ସେ ଯାହାର ଖାଇ ଘରକୁ ଗଲେ । ମୁଁ ସିନ୍ଦୂର ମୁଣ୍ଡୁ ବାଏ ନାଇଥାଏ; ଅଧେ ଜାଗୁରେଇ ଦେଉଥିଲା, ଅଧେ ହେଙ୍ଗୁରେଇ ଦେଉଥିଲା ହସୁଥାଇ । ଅଙ୍ଗ ହରଦଆ ଖଦ ଖଣ୍ଡିକ ପିନ୍ଧିଥାଇ । ଗୁଆ ଟିକେ ପାଟିରେ ପକେଇ ଥାଇ ।

ଆତର ହେଲା । ସାଆନ୍ତ ପୁଅ ଆଇଲେ । ମୁଁ ତାଙ୍କ ସାଙ୍ଗେ ଗୋର କଲି । କଇଲି--ମୁଦ କାଇଁ ? ବରା କାଇଁ ?

ଗୃଶ ବାଣ୍ଟର ଅସ ମୁଦ, ଅସ ବରା ଆଇଲା । ମୁଁ ହନକୁ ଥୁଅଇ, ଆଉକ ପିନ୍ଧଇ; କୁଦେଇ କୁଦେଇ ଗୃଲୁଥାଇ, ସାଆନ୍ତ ପୁଅ ମୁଦେଇ ମୁଦେଇ ହସୁଥାନ୍ତ ।”

ବାହ୍ମଣୀ ନାନୀ ହସି ହସି ବେଦମ୍; କହିଲା—ଘୋର ଅଭାବ ଭିତରେ ତୁ ଅଭାବ କଣ ଜାଣୁନାଇଁ; ଦୁଃଖ ଭିତରେ ଦୁଃଖ ହଏ ନାହିଁ । ଏ ସଂସାରରେ କେଡ଼େ ସୁଖୀ ତୁ ! ଅଇସୁଲକ୍ଷଣୀ ହେଇ ଥା । କାଚ ଚୋର ବଜର ହଉ । ମୁଁ ଯାଉଚ ଲୋ ମଙ୍ଗୁଳୀ, ତେଣେ ଘର ଗୋଠା-କର ଆଡ଼ୁଡ଼ି ପଡ଼ର ପଡ଼ଚ ।

ସତ୍ତୁ କହିଲା—ସମୁଦ, ମୁଁ ଏ ଭାଷା ଅଧା ଗଅଁଠ ବୁଝି ପାରୁଚ । ମଙ୍ଗୁଳୀ ତା ବା’ଘର କଥା କହୁଚ ।

ମିଛୁ—ଗରିବ ବାଉରି ଘର ଝିଅ । ରସ ଖଡ଼ୁ, ରସ ବଳା ପିନ୍ଧିବ । ଘରେ ଚୂଲି କୋଳଥ ଉଅଣ ହବା ଗୋଟେ ବଡ଼ କଥା । କୋବ ଖଇ ଖାଇବାକୁ ଝିଅ ଅଳି କରୁନାଇଁ । ଗେଲବସରି ସେ, କୋଳଥ ଉଅଣ ଲାଗି ରୁଷି ବସିଚ । ଜୋଇଁକ ଖଡ଼ୁ, ନୋଳ ଯଉତୁକ ଦେଇ ବାପ ସଲଂଟନରେ ମଶାଲ ଜାଳି ବଭାଘର କରିଚ । ଇଣ୍ଡୁରି ପିଠାରେ ଏତେ ଟିକିଏ ନାଳି ନଡ଼ିଆ ପୂର ଖାଇ ଭଇ ବରାବର ଖୁସି ।

Digitized by srujanika@gmail.com

ସତ୍ରୁ ଜେନା କହିଲା—ଆମ ଆଡ଼େ ସେ ବି ଗୋଟେ ଭାଗ୍ୟ। ବର୍ଷକେ ଥରେ ନଡ଼ିଆ ମୁହଁ ଲୋକେ ଦେଖନ୍ତି ନାହିଁ। ତୁମ ଆଡ଼େ ନଡ଼ିଆ ହାଉଯାଉ ବୋଲି ଡାଲିରେ ନଡ଼ିଆ, ତିଅଣରେ ନଡ଼ିଆ, ମଣ୍ଡା ପିଠା ଆଉ ଇଣ୍ଡୁରି ପିଠାରେ ମେଞ୍ଚା ମେଞ୍ଚା ନଡ଼ିଆ ପୁର ଦଉଚ।

ଆମ ଆଡ଼େ ଏ ପୁରଦିଆ ପିଠା ଦେଖିଲେ କାବା ହୋଇ ପଚାରନ୍ତେ—ଗୁରୁ ପଠ ତ ବନ୍ଦ, ଏ ପୁର ପଶିଲା କୋଉ ବାଟେ ?

ମିଚ୍ଚୁ ହସି ହସି କହିଲା—ନଇଲେ କଣ ମିଛକୁ କହନ୍ତି—ଢେଙ୍କା···

ସତ୍ରୁ—ରଜା, ଜମିଦାର ଲୋକଙ୍କୁ ଓଲୁ ବନେଇଥିଲେ। ଏ ଯୁଗରେ ଆଉ କିଏ ଅପିଆଣା ଅଛି ? ମୁଁ କହୁଥିଲି ଆଦିବାସୀଙ୍କ କଥା, 'କୋହ୍ଲୁ' ଶବ୍ଦ କୋହ୍ଲରୁ ହିଁ ହୋଇଛି—ତାପରେ ହୋଇଛି ଓଲୁ ବା ଓଲା। ଏବେ ବି କୋହ୍ଲଙ୍କ ଓଲମି ଗୁଚିନାହିଁ—ମାନେ ସେମାନଙ୍କ ସରଳତା ବା ନିରୀହତାର ସୁଯୋଗ ନେଇ ତଥାକଥିତ ଭଦ୍ର ସାହୁକାର ବା ଜମି-ମାଲିକମାନେ ସେମାନଙ୍କୁ ଶଟା କାଟନ୍ତି। ଶ୍ରମର ଠିକ୍ ମୂଲ୍ୟ ଦିଅନ୍ତି ନାହିଁ। ସେମାନଙ୍କ ମଧ୍ୟରୁ ଅଧିକାଂଶ ବର୍ଷକେ ଛ'ମାସ ଭାତର ମୁହଁ ଦେଖନ୍ତି ନାହିଁ। କନ୍ଦା, କରଡ଼ା ଆଦି ଚେରମୂଳ, ଆମ୍ବ କୋଇଲି ବା ଗଛପତ୍ର ଖାଇ ବଞ୍ଚନ୍ତି।

ମିଚ୍ଚୁ—ଆମ ଆଡ଼ ଲୋକ ଏଡ଼େ ଗରିବ ବା ଅପିଆଣା ନୁହନ୍ତି। ଘରର ପ୍ରାୟ ସମସ୍ତେ ଖଟନ୍ତି, ଖାନ୍ତି। କାମକୁ ନ ଗଲେ ଓପାସେ ରହନ୍ତି। ଓପାସ ବି ଦେହସୁହା। ଖାଇଲା ପିଇଲା ଘରେ ଓଷା ବା ଓପାସ ଗୋଟେ ବଡ଼ କଥା, ବାଉରି ଘରେ ସେ ଲାଗି ପର୍ବ ଖଞ୍ଜା ନାହିଁ। ବାର ମାସରେ ମାସେ ବଡ଼ ଏକାଦଶୀ ବା ବାଳଭୃଙ୍ଗଷ୍ୟା ଲୋକ ହୋଇଯାଏ। କାହିଁକି କୋଉ ଠାକୁରକୁ ଡାକିବେ ? କିଏ ବା ଘୋର ଶ୍ରମରୁ ଅବ୍ୟାହତି ଦେଇ ପାରିବ ?

ନିରଳସ ଲୋକ ପ୍ରାୟ ରୋଗ ଭୋଗେନାହିଁ। କୋଉ ବାଉରି ରୋଗରେ ଶୋଇବା କ୍ୱଚିତ୍ ଦେଖାଯାଏ। ରୋଗ ହେଲେ ଗଡ଼ି ଗଡ଼ି

Digitized by srujanika@gmail.com

ଉଠେ; ନଇଲେ ଚଣ୍ଡ ପଡ଼ ମରେ । ଏଣେବ ଝୋପେ କଏ ବଏ ? ଏଣେ ପେଟ ବାଉ ସମ୍ଭାଳି ତେଣେ ସେବା କରିବାକୁ କାହାର ବଳ ବା ବେଳ ଥାଏ ?

ହଇଜା, ବସନ୍ତ ଆଦି ମହାମାରୀ ଘୋଟିଲେ ତ ବାଉରିସାଇକୁ ଆଗେ ପଦା କରେ । ନଅଙ୍କ ପଡ଼ିଲେ ଏଇ ସାଇ ଲୋକେ ଆଗେ ଘର ଛାଡ଼ ପଳାନ୍ତି । ଧୋଇ ହେଲେ, ମରୁଡ଼ି ପଡ଼ିଲେ ଏ ସାଇ ଲୋକେ ଆଗେ ଓପାସେ ରହନ୍ତି । ନିଜ ରକ୍ଷଣ ଯେତେବେଳେ ଅସମ୍ଭବ, ସେତେବେଳେ ଯୁାଙ୍କୁ ସମ୍ଭାଳି ରଖିପାରେ କଏ ?

ଅଥଚ ଏ ଲୋକେ ନ ଥିଲେ ଗାଁର କୃଷି ଅଚଳ, ବାସ ବି ଭଙ୍ଗେ । ଭୂତମୁଣ୍ଡିଆ, କନାଧଡ଼ିପିନ୍ଧା ଭେଇ ଗାଁର ବଳ । ଗାଁର ଯେତେ କିଛି ସୁଖ ସୌଭାଗ୍ୟ, ତା'ରି ଲାଗି । ସାଆନ୍ତଙ୍କ ସାଆନ୍ତୀ, ବଡ଼ଲୋକଙ୍କ ବଡ଼ଲୋକି ସବୁ ତା'ରି କଠୋର ପରିଶ୍ରମ ଯୋଗୁଁ ।

ଅଥଚ ଏତେ କାଳ ସେ ଅଛୁଆଁ ହୋଇ ଥିଲା, ତା ଲାଗି ଲକ୍ଷ୍ମୀ ଠାକୁରାଣୀ ବଡ଼ ଦେଉଳ ବୟକଟ୍ କଲେ, ଜଗନ୍ନାଥ, ବଡ଼ ଠାକୁରଙ୍କୁ ଓପାସେ ରଖିଲେ । ମହାତ୍ମାଙ୍କ ଆଖି ପଡ଼ିବା ଯାକେ ତଥାପି ସେ ଭାବ ଦୂର ହୋଇ ନ ଥିଲା । ମହାତ୍ମା ତାରି ଭିତରେ ଶ୍ରୀହରିଙ୍କୁ ଦେଖିଲେ, ସେ ହେଲା ହରିଜନ, ହରିଙ୍କ ଏକାନ୍ତ ପ୍ରିୟ ମଣିଷ । ମହାତ୍ମା ତା'ରି ସାଙ୍ଗେ ରହିଲେ, ତା'ରି ଚିର ଦୁଃଖ କଷ୍ଟ ଅଙ୍ଗେ ଲିଭେଇ ଚାଲିଲେ । ଛୁଆଁ ଅଛୁଆଁ ଭାବ ଦୂର ହେଲା । ତାପରେ ତାର ଗରିବୀ ଦୂର କରିବା ଚେଷ୍ଟା ଚାଲିଛି । ଅଳସ ଅକର୍ମଣ୍ୟ ହାତରୁ ପ୍ରକୃତ କୃଷୀ ହାତକୁ ଆସ୍ତେ ଆସ୍ତେ ଗାଁର କୃଷି ଜମି ଖସି ଆସୁଛି ।

ତଥାପି ଅଧିକାଂଶ ବାଉରି ଗରିବ, ଜମି ମୂଲିଆ ହୋଇ ଚଳୁଛନ୍ତି । ଖରା ଝାଇଁ ଝାଇଁ ଅପନ୍ତରା ଗହୀରରେ ଦରମଲା ବଳଦ ଅଡ଼ାଇ ଗୋଡ଼ଙ୍ଗୀ ଲଙ୍ଗଳରେ ଏବେ ବି ସେ ହଳ କରେ; ଲୁହାଲଙ୍ଗଳ ବା ଆଜିକାଲିକା କୃଷି ଯନ୍ତ୍ରପାତି କିଣିବାକୁ ତା ହାତରେ ପଇସା ନାହିଁ ।

Digitized by srujanika@gmail.com

ବୈଉଷଣ ବେଳେ ଛେଚୁକଙ୍କୁ ବରଷା ମାଡ଼ି ସେ ସହେ । ତାକୁ ଦୁଃଖ ଧୈଇ ଦେଇ ଦୈବ ହି କ୍ଲାନ୍ତ ହେଇ ପଡ଼େ ।

ଏବେ ହି ବୋହୂ ସାତ ମଙ୍ଗଳା ନ ଯାଉଣୁ, ଏକୋଇଶା ନ ଯାଉଣୁ ପିଲେଇଷ୍ଟ ଧାନ ବେଉଁ ବା କାଟି ଯାଏ । କିଏ ବା କାମ ମଝିରେ ଇଛୁଆଣୀ ପିଲ୍‌କୁ ଦୁଧ ପେଇ ଆସେ; କିଏ ବା ପିଲ୍‌କୁ ହାଡ଼ ମୁଣ୍ଡରେ ଶୁଆଇ କାମ କରେ । ପିମ୍ପୁଡ଼ି କାମୁଡ଼ିଲେ ପିଲା ଚିତ୍କାର କରି ଉଠେ ।

ହେତୁ ହେଲ ଦିନୁଁ ଧନ୍ଦା ଲଗେ—ଜାଲଗୋଟିଆରୁ ଶାଗ-ତୋଳା, ପିଲ ଧରା; ଜଣେ ବାଉରି ଝିଅ ଇସ୍କୁଲକୁ ଯିବାର ସୁଯୋଗ ପାଏନାହିଁ । ଗରିବୀ ତାର ଶତ୍ରୁ ।

କେତେ ଦୁଃଖକର ଅବସ୍ଥା ତାର ! ନିଜ ଲୋକ ମରିଗଲେ ବି ସେ ଲୁହ ଗଡ଼େଇବାକୁ ବେଳ ପାଏ ନାହିଁ । ପେଟର ଦାଉ ଅସମ୍ଭାଳ । ଦାଣ୍ଡରୁ ଆସେ ହାଣ୍ଡିରେ ପଶେ । ଜମା ଶୂନ୍ । ଅବେଳରେ ଖୋଜିଲେ ସାଇରୁ ଚାଉଳ ମାଣେ ଉଧାର ମିଳେ ନାହିଁ । ସମସ୍ତେ ତ ଅଭାବୀ । କାହା ଅଭାବ କିଏ ଦୂର କରିପାରିବ ?

ଖେଳରୁ ମନ ଛୁଡ଼େ ନାହିଁ । ପେଟ ଦାଉରୁ ବାଉରି ଛୁଆ ସାଆନ୍ତର ଗାଈ ଚରାଇ ଯାଏ । ଭଲ ମୁଠେ ଖାଇବାକୁ ମିଳିବ; ଦେହରେ ମାଉଁସ ଲାଗିଲେ ଲୋକ ଲାଗି ଅର୍ଜିବାକୁ ସମର୍ଥ ହେବ, ଏଥିଲାଗି ବାପ ଅଣ୍ଟାଳ ବାଳୁତ ପୁଅକୁ ଗାଈଜଗା କରି ରଖେ ।

ଏତେ ଖଟି ଖଟି ପିନ୍ଧାରୁ ପଗଡ଼ି ପର୍ଯ୍ୟନ୍ତ ଭୋଇର ସବୁ ଚିରା । ମାଇପର ଇଜ୍ଜତ ମୂଳ, ତାକୁ ଦଡ଼ି ଖଣ୍ଡେ ପିନ୍ଧାଇ ନିଜେ ସେ ସାତସିଆଁ ଗାମୁଛା ପିନ୍ଧେ ।

ଗୋଟି ଗୋଟି କରି ଏଇ ଭୋଇଙ୍କ କଥା ମୁଁ ଠିକେ ଠିକେ କହୁଛି, ମିଛୁ କହିଲି । ଟିକେ ଆଗେଇବା ମାନେ ପାଠୁଆର ଆଖେଡ଼ା-ଘରୁ ଏ ଗୀତ ସ୍ୱର ଶୁଭିଲା—

Digitized by srujanika@gmail.com

ସେହୁ ହେଲା ରେ ସେହୁ ହେଲା
ସେହୁ ହେଲା ସେ···ହୁ···ହେ···ଲା···

ସବୁ ହସୁ ହସୁ ସମୁଦ୍ରଙ୍କ ଚରିରଦେଲା—ଏ 'ସେହୁଟି' କଣ ? ସାପ ନା ବେଙ୍ଗ ? ଚିଙ୍କି, ବଗ ନା ଚକୁଳ ? ମିଛୁଁ ବି ସେହିପରି ହସୁ ହସୁ ଉତ୍ତର ଦେଲା—ସେ ଏ ସବୁ କିଛି ନୁହେଁ, କେବଳ 'ସେହୁ' । ଦୁହେଁ ହସାହସି ହଉଁ ହଉଁ ପୁଣି ଆଗେଇଲେ ।

ଏ ଗୁଣ୍ଡିରି ଭୋଇର ଘର; ପୁଅ ଶଙ୍କରକୁ କୋଳରେ ଦେଇ ସ୍ତ୍ରୀ ଅଲୁଅ ମଲା । ବର୍ଷକ ପରେ ଗୁଣ୍ଡିରି ବାଘ ହେଲା ଗୋବରୀକି; ଗୋବରୀ ପେଜପାଣି ପେଇ ଶଙ୍କରକୁ ବଡ଼ କଲା; କଙ୍କାଳସାର, ଦେହରେ ପଲେ ମାଉଁସ ନାଇଁ; ଦେହରେ ମାଉଁସ ଲଗେଇବା ଲାଗି ଗୁଣ୍ଡିରି ପୁଅକୁ ସାଆନ୍ତ ଘରେ ଗାଈଜଗା କରି ରଖିଲା । ମୁଣ୍ଡକୁ ହାତ ପାଇଲା ପରେ ଶଙ୍କର ଲୋକ ଲଗିଲା, ବାଘ ହେଲା ।

ଗୁଣ୍ଡିରି ଦିନକ ହଇଜାରେ ମଲା; ଗୋବରୀର ପୁଅଟିଏ । ବାପ ମଲା ପରେ ଶଙ୍କର ମାଆଠୁଁ ଭିନେ ହେଲା । ଆଉ ପୁଅ ବଡ଼ ହେଲାରୁ ଗୋବରୀ ତାକୁ ବାଘଟୋକା କଲା ।

ଏତିକିବେଳେ ଗୋବରୀର ଆଖି କଣା ହେଲା । ଟୁଣୁକା ଟୁଣୁକି ଯେ ଯାହା ବତେଇଲା, ସେ କଲା; ଫଳରେ ଆଖି ଫୁଟିଗଲା । ସାଆନ୍ତ-ମାନଙ୍କ ଘରେ ଗୁହାଳ ଗୋଟେଇ ଚଳୁଥିଲା, ମୂଲ ବି ଲଗୁଥିଲା; ଏବେ କଣ କରିବ ? ସାବତ ପୁଅ ତ ଭିନେ କରିଥିଲା; ଏବେ ନିଜ ପୁଅ ବି ମାଇପ ଶିଖାରେ ପଡ଼ି ଭିନେ କଲା । ଲୋକେ ଛି-ଛି କଲେ; ସାଇର ଭଲ ଲୋକ ବସି ସ୍ଥିର କଲେ—'ଏ ପୁଅ ପନ୍ଦର ଦିନ, ସେ ପୁଅ ପନ୍ଦର ଦିନ ଅନ୍ଧୁଣୀ ମାଆକୁ ଖାଇବାକୁ ଦେବ ।' ଏ ବେବସ୍ଥା ବି ବେଶୀ ଦିନ କାମ ଦେଲା ନାହିଁ । ଗୋବରୀ ଭିକ ମାଗି ବୁଲିଲା; ଗୋବରୀ ପ୍ରତି ଦରଦ ପ୍ରକାଶ କଲାରୁ ମାଇରୁ କଣେ ବାହାରି ପଡ଼ି କହିଲା— ଭୁଣ୍ଡ ଖରାପ, ଏଠା କାହା ପାଖେ ଚଳିବ ? ସୁବିଧା ଅସୁବିଧା କାହାର

Digitized by srujanika@gmail.com

ନାହିଁ ? ଘର ଘର ଚଳେଇଲେ ସିନା ହୁଏ ! ଗୋବର୍ଦ୍ଧ ପୁଅ, ବୋହୂ ନାତିନାତୁଣୀଙ୍କ ମୁହଁକୁ ନ ଚାହିଁ ପୁରାଣ ଖୋଲିବ—ତା ମୁଣ୍ଡରେ ରାଧାଚଢ଼କ ପଡୁ, ଚନ୍ଦର ବାଡ଼ ଢୋଟୁରେ, ଠାକୁରାଣୀ ଖାଉରେ···

ଏ ନୁଖୁରି ଭୋଇର ଘର; ନୁଖୁରର ଛ' ପୁଅରୁ ଗୋଟିଏ ସାପକାମୁଡ଼ାରେ ମଲା, ତା ତଳଟି ନଈ ସୁଅରେ ଭାସିଗଲା; ତା ତଳଟି ମଲା ପରେ ନୁଖୁରର ଅବସ୍ଥା ବଦଳିଲା; ମଟର ଆକ୍‌ସିଡେଣ୍ଟ୍‌ରେ ମଲା ପରେ ସେ ପୋଉ ତିନ ହଜାର ଟଙ୍କା କ୍ଷତିପୂରଣ ପାଇଲା, ସେଥିରେ ସେ ମାଣେ ଜମି କିଣି ପକେଇଛି। ରାତି ଘଡ଼ିଏ ଥାଉଁ ଘରୁ ସମସ୍ତେ ଯାଇ ଧାନ କାଟି ଆଣନ୍ତି। ମୂଲ ବନ୍ଦ କରି ନୁଖୁରି ସେ ଜମି ଚାଷ କରେ ନାହିଁ। ସାଆନ୍ତ କାମକୁ ଯିବା ଆଗରୁ ସେ ହଳପାଳ, ବଗୁଲିକଟା ସବୁ କରେ। ସେ ଧାନ କେହି ବସି ଖାଏ ନାହିଁ। ସବୁ ବିକା ହୁଏ; ସେ ଟଙ୍କାରେ ନୂଆ ଜମି କିଣା ହୁଏ। ଘରର ସମସ୍ତେ ମୂଲ ଲାଗନ୍ତି। ବହୁତ ମଜୁରି ଆସେ। ସାଆନ୍ତମାନେ ଅଳସ ପଣରୁ ଛାଡ଼ୁଥିବା ବେଳେ ସେ ବଢ଼େ। ସତରେ ସମୁଦ୍ଧ, ଏ ଯୁଗ କାମିକା ଲୋକର।

ଏ ଗ୍ରେଞ୍ଚା କପିଳାର ଘର; ଏ ଯୁଗ ହୋଇଥିଲେ ସେ ବିକଳାଙ୍ଗ ଭତ୍ତା ପାଉଥାନ୍ତା। ଘରେ କାମିକା ଲୋକକୁ ପେଟପୂରା ଖାଇବାକୁ ନ ମିଳୁଥିବା ବେଳେ ଅକାମିକାକୁ ବସେଇ ପୋଷୁଚି କିଏ ? ନିଜ ପେଟରୁ କାଟି କିଏ ବା କେତେ ଦିନ ଦେଇ ପାରିବ ? ତେଣୁ ଅନ୍ଧ, କେମ୍ପା, ବୋବା ଦୈବାତ୍ ବାଉରି ଘରେ ଜନ୍ମ ହେଲେ ଅବହେଳାରେ ଶୁଖି ଶୁଖି ଶୁଖୁଆ ହୋଇ ମରେ।

ଏ ଅବସ୍ଥାରେ କେହି ବୋଝ ହୋଇ ବଞ୍ଚିବାକୁ ଚାହାନ୍ତିନି। ଅନ୍ଧ ଦଉଡ଼ି ବୋଳେ, ବାଣି କାଟେ, ମୁନ୍ଦୁରି ବା ମଶିଣା ବୁଣେ। ସେମିତି ଯେତେ କଷ୍ଟ ପଡ଼ୁ ପଛେ ଗ୍ରେଞ୍ଚା ଗ୍ରେଞ୍ଚେଇ ଗ୍ରେଞ୍ଚେଇ କାମ କରେ। ଠେଙ୍କା ବଳରେ ଚାଲି ଚାଲି ତା ପାଦ ମାକଡ଼ା ପଥର ପରି ଟାଣ ହୋଇଯାଏ; ସେ ହଳ କରେ, ବାଛେ ବା କାଟେ, କିନ୍ତୁ ଘର ବୋହି ନେଇପାରେ ନାହିଁ।

Digitized by srujanika@gmail.com

ଶ୍ରେଷ୍ଠାର ମାଆ ଡେଙ୍ଗେଇ, ଗୋଷ୍ଠ, ବାଉର ସାଇରେ ପ୍ରାପ୍ତ ସମସ୍ତେ କଳା ବା କାଳୀ । ବଳଦଗୁଳୀ ଭିତରେ ଶ୍ରେଷ୍ଠା ମାଆ ଧର୍ଳା ବଡ଼ିଆ କାଙ୍କଟିଏ ପରି ଦୂରରୁ ଦିଶେ । ତା ଗୋଡ଼ ତକ୍ ତକ୍ ସୁନା ଚେହେରା ଖରା ଝାସରେ ଅମଳା ପିତ୍ତଳ ପରି ମଳାନ ଦିଶେ । ଏ ରୂପକୁ ଦେଖି ହଳିଆ କବର ସୀତା ଦେବୀ ମନେ ପଡ଼ନ୍ତି । ସେ ଗାଏ—

‘ଆହା ମୋ ଜାନକୀ ପିତ୍ତଳ ପ୍ରତିମା
କେତେ କାଳ ବସି ଗଢ଼ିଲ ବେଦବ୍ରହ୍ମା ।’

ବାଉରଣୀଙ୍କ ହାତରେ ମୋଟା ମୋଟା ପିତ୍ତଳବାହୁ । ଏହାକୁ ଦେଖି ଫିରିଙ୍ଗି ଓଡ଼ିଆ ମାଇପୀଙ୍କି ସୁନାର ବ୍ୟାଙ୍କ୍ ବୋଲି ଭୁଲ୍ ଧାରଣା କରିଥିଲେ, ଯାହା ଗୋପବନ୍ଧୁଙ୍କ ଲୁହ ଅସରାରେ ଧୋଇ ହୋଇଯାଇଥିଲା ।

ବାଉର ସୁନା ଦେଖିଥିଲେ ଦେଖିଥିବେ ସାଆନ୍ତାଣୀଙ୍କ ବେକ କଣ୍ଠି, ମହୁଡ଼ ବା ମୋରଷିଆ ମାଳରେ । ନଇଲେ ରତିଏ ସୁନା କିଣିବାର ଶକ୍ତି କାହାର ଅଛି ?

ଶ୍ରେଷ୍ଠା କପିଳାର କକେଇ ବୁଢ଼ିଆ । ସେ ମାନୀ, ସ୍ୱାଧୀନମନା । ସେ କାହା ଘରେ ଲେକ ଲଗେ ନାହିଁ କମ୍ବା ଦାଣ୍ଡମଜୁରିରେ କାମ କରି ଯାଏ ନାହିଁ, କାଳେ କିଏ ମାନହାନିକର ପଦେ କହିଦବ !

ଗରିବ ଘରେ ଜନ୍ମ ହେଇଚି; କିନ୍ତୁ ତା ମନ ଗରିବ ନୁହେ । ନିଜ ମୁଣ୍ଡ ଟେକି ଜୀବନସାରା ଚଳି ଆସିଚି; ସେଇ କୁଳର ଗର୍ବ ସେ ।

ତାର ଅରାଏ ବିଆଳି ଜମି ଅଛି । ଜମି ତା କୁହା ମାନେ । ଯେତିକି ଡାକେ, ସେତିକି ଫଳେ । କିଆରିସାରା ଏକ ସମାନ ଧାନ ଗଛ । ମଢ଼ିଆ ବା ମୁ ଛୁକୁଟିଆ ଗୋଟେ ହେଲେ ନାହିଁ । ସେମିତି ତା କୋଳଥ ବିଲରେ ଗୋଟେ ହେଲେ ମୁଥା, ଦୂବ, ଗଞ୍ଜଣ ବା ଫୁଟିଫୁଟିକିଆ କାହିଁ ଦେଖିବ ନାହିଁ ।

Digitized by srujanika@gmail.com

ବୁଢ଼ିଆ ବଢ଼ ଆଇଁଷିଣିଆ ଗନ୍ଧାଏ । ଛଉକା କାଣ୍ଠିଆ ବଗପରି ସେ ଏକଧ୍ୟାନରେ ଗଡ଼ା ମୁଣ୍ଡରେ ବସି ଥାଏ । ଦଳ ବାନ୍ଧ ପାଣି ସୁଅରେ ମାଛ ଗଡ଼ିଗଲା ପରେ ସେ ଗଡ଼ାମୁହଁ ବନ୍ଧେଇ ଦିଏ । ଦାନ୍ତଆ-ଭରା କେରାଣ୍ଡି ।•ସେ ଶୁଖେଇ ପିତା ଶୁଖୁଆ କରେ, ହଳଦିଗୁଣ୍ଡା ପକାଇ ଓଳିଆ ବାନ୍ଧେ । କାଞ୍ଜିଅଁଳା ଓଷାରେ ବୋହୂ କରି ବସେଇବା ଲାଗି ଲୋକେ ତାଠୁ କେରାଣ୍ଡି ଶୁଖୁଆ ଆଣନ୍ତି । ସେ କିନ୍ତୁ କାହା ଦୁଆରକୁ ଯାଇ କିଛି ମାଗେନାହିଁ ।

ସେ କହେ--ମାଗିବାଠୁ ହୀନ ନାହିଁ । ମୁଣ୍ଡ ନୋଇଁ ତଳ ହାତରେ ନେଲେ ମନ ଛୋଟ ହୋଇଯାଏ । ନ ନେଇ କଣ ଚଳି ହବନାହିଁ ?

ପିଲାପିଲାଙ୍କ ମନା—ଚିତଉ ଅମାବାସ୍ୟାରେ ଚିତଉ, ଗହ୍ମା ପୁନିଅଁରେ ଇଣ୍ଡୁରି, ଦଶହରାରେ ଘିପିଠା, ବଉଳ ଅମାବାସ୍ୟାରେ ମଣ୍ଡା, ଗଇଁଠା, ଦୋଳରେ ଉଖୁଡ଼ା, ଚଣା, ଖଜା, ଶାକର ସାଆନ୍ତଘରୁ ମାଗି ଆଣିବା ପାଇଁ ଗଲେ ସେ କହେ—ଲାଗିଖିଆ ଲୋକ କେବେ ମାଗି ଖାଏ ନାହିଁ,

ମାଗି ଆଣିଲା ଭିଅଣ କେତେ ? ହାପୁରିଏ ମାନ ।
ଏଥିରେ କଣ ପେଟ ପୂରେ ? ମାନ୍ ଯାଏ ମାନ ।

ନିଜ ଗୋଡ଼ରେ ନିଜେ ଚାଲ । ପାଇଲେ ଖାଅ, ନଇଲେ ଓପାସେ ଶୁଅ । ସେଥିରେ ପେଟ ନ ପୂରିଲେ କଣ ହେଲା ? ମନ ପୂରେ ।

ବୁଢ଼ିଆ ପାଠ ପଢ଼ିନାହିଁ । ତାର ହିତାହିତ ଜ୍ଞାନ କୋଉ ପାଠୁଆଠୁ କମ୍ ନୁହେ । ସେ କାହାର କ୍ଷତି କରେନାହିଁ, ଅମଙ୍ଗଳ ଚାହେଁ ନାହିଁ । ସେ କୋଉ ଠାକୁରଙ୍କ ପାଖରେ ମୁଣ୍ଡିଆ ମାରେନାହିଁ । ଶୁଦ୍ଧ ପୂତ ନିଜ ମନର ଦେଉଳ ଭିତରେ ଦିଅଙ୍କୁ ଦେଖେ, ତା ମୁଣ୍ଡ ସେଇଠି ନଏଁ ।

ବୁଢ଼ିଆ ଗୁରୁଗମ୍ଭୀର ଭାବେ ଜାତିଆଣ ସଭାରେ ବସେ । ସେଠି ଯେତେ କଥା ପଡ଼େ, ସେ କାହିଁରେ ପ୍ରଭାବିତ ହେଲା ପରି ଜଣା ପଡ଼େ-

Digitized by srujanika@gmail.com

ନାହିଁ । ସବୁ କଥାରେ ତା ନିଜର ଅଲଗା ଭାବନା ଅଛି । ସେ ଶ୍ଳୋକ ପଢ଼େନାହିଁ କି ଭଗବତମାଳ ବୋଲେ ନାହିଁ । ନିଦା କଥା ପଦେ କହେ । ସେଇ ହୁଏ ସଭାର ଗପୂ ।

ଗରିବଙ୍କ ଭିତରେ ଏଡ଼େ ଖାଣ୍ଟି ମଣିଷ ଦେଖିବାକୁ ମିଳେନାହିଁ ।

ବୁଢିଆ ପାଖକୁ ସୁବଳୟାର ଘର । ଅଖାଡ଼ୁଆ, ଅବାଗିଆ, ବଡ଼ହଡ଼ା ମଣିଷଟାଏ । ଆବଖାବଡ଼ିଆ ଦେହ । ମୁଣ୍ଡ ବାଳ ଠିଆ ଠିଆ, ନୁଖୁରା, କହିଁବ ହାଣ ପର ଏମିତି ଗୋଟେ ମଣିଷକୁ ନ ଥିଲା ଘରେ ଭଗବାନ୍ ଜନମ ଦେଲେ କାହିଁକି ?

ବଡ଼ଖିଆ, ବଡ଼ଆଖିଆ ମଣିଷ; ଖାଲି ଘରକୁ ଗୃହିଁ ଦେଲେ ହଁସା ଉଡ଼ିଗଲା ଫିଶ ତାକୁ ଲାଗେ । ଓଷାପର୍ବରେ କି ବନ୍ଧୁଘର ଭାଇ-ଭାତରେ ସେ ଖାଉଥିଲେ ଖାଉଥାଏ । ସମସ୍ତେ ହାତ ଟେକି ତା ଆଡ଼କୁ ଗୃହିଁଲେ ତାକୁ ଲାଜ ମାଡ଼େ । ତଥାପି ପରସ୍ତୁଣୀକି ସେ ହଁ—ନାଇଁ ଗୋଳେଇ ମିଶେଇ କହେ ।

ଗଉଣିଏ ମୂଲ ଧାନରୁ ମାଇପ, ପିଲେ କଣ ଖାନ୍ତୁ, ତା ଭାଗରେ ବା ପଡ଼େ କେତେ ? ତେଲ, ଲୁଣ, ସଉଦାପତ୍ର ବା କରନ୍ତୁ କେତେ ?

ବନ୍ଧୁବେଭାର ବୋହୂ ନବାକୁ ସେ ଆଗୁଆ ହୋଇ ବାହାରେ । ହବାକି ଯାହା ମିଳୁ, ନ ମିଳୁ, ପେଟପୂରା ମୁଠାଏ ଖାଇବାକୁ ମିଳିବ !

ଖଳାଭରା ଧାନଗଦା, ବିଲଭରା ମୁଗ, କୋଳଥ । ପେଟ ହାକୁ ହାକୁ ପଡ଼ୁଥିବା ବେଳେ ସେ ଚୋରି ନ କରେ କେମିତି ? ଆଶ୍ଚର୍ଯ୍ୟ ଲାଗେ । ଏଡ଼େ ସାଧୁକୁ ଓପାସେ ରଖିବାକୁ ତୁମକୁ ଲାଜ ମାଡ଼େନାହିଁ, କେମିତି, ହେ ଭଗବାନ୍ ? ତୁମକୁ ଯେ ଡାକେ, ସେ କଣ ଏହାଠାରୁ ବଡ଼ ଭକ୍ତ ? ତାକୁ ଖିଆ ଚୋରେଇ ଦିଅ, ସୁବଳୟା ଲାଗି ତୁମକୁ କଷ୍ଟ ମିଳେନାହିଁ ?

Digitized by srujanika@gmail.com

ଦିନେ ଖାଲି ପେଟରେ ଆମ କାମକୁ ଆସିଥିଲି । ଠିକେ କାମ କୈରୁ କରୁ ହାତ ଗୋଡ଼ ଆଉ ଚଳିଲା ନାହିଁ । ସେ ଧକେଇ ପଡ଼ିଲା । ତା ପେଟ ବଥା ନ ବୁଝି ମୁଁ ରାଗି ନିଆଁ ହୋଇଗଲି । ତାକୁ ବର୍ଷେ ଅଧାରୁ ବିଦାୟ ଦେଲି । ଅଢ଼େଇ ପହରକୁ ତାକୁ କଂସେ ତୋରାଣିରେ ଗୁଣ୍ଡେ ଭାତ ମିଳୁଥିଲା । ଏଥିକୁ ଖାଇ ସେ କି କାମ କରନ୍ତା, କେତେ ଦିନ ତିଷ୍ଠି ପାରନ୍ତା ?

ଅଧା ବୟସରୁ ସୁବଳିଆ ଗଲା । ମର୍ମେ ମର୍ମେ ମୋ ପାପର ପୋଡ଼ାଜଳା ବ୍ୟଥା ଏବେ ବି ଭୋଗୁଛି ।

ଖୁଲଣା କାନ୍ଦୁଥିଲା, ପୁରୁଷ ମଲେ ସ୍ତ୍ରୀ କାନ୍ଦେ ବୋଲି । ନଇଲେ ତାର କି ଶକ୍ତି ଥିଲା ବଡ଼ଘିଆ ଏ ହାଣ୍ଡିଟିକ ବଞ୍ଚେଇ ରଖିବା ଲାଗି ?

ଗେଲେଇ ଫୁଲେଇ ହବାର ଦେହେରୀ ଖୁଲଣାର ଥିଲା । କିନ୍ତୁ ଦିନରାତି କାମରେ ଘାଣ୍ଟି ହୋଇ ତା ଦେହେରୀ କୁହୁଡ଼ପୋଡ଼ା ଆମ୍ବ-ବଉଳ ପରି ଦିଶୁଥିଲା ।

ବାଳୁତ ପୁଅ ଗୋଡ଼ରେ ଦଉଡ଼ି ବାନ୍ଧି ବାଉଁଶ ଖୁମ୍ବରେ ଲଟକେଇ ଖୁଲଣା କାମକୁ ଯାଉଥିଲା । ଅଢ଼େଇ ପହରେ ଫେରିଲା ବେଳକୁ ପୁଅଟା ଉପାସଭୋକରେ ଆଲିଜା ହୋଇ ପଡ଼ିଥାଏ । ଘରୁ ସମସ୍ତେ ମୂଲ ଲାଗିଗଲେ ପିଲାଙ୍କ ହୀନଅବସ୍ଥାର ସୀମା ରହେ ନାହିଁ ।

ଏତେ ଦୁଃଖ ଜଞ୍ଜାଳରେ ଝିଅ 'କୁସୁମ' କଥା ଭାବି ଭାବି ସେ ମୃତା ଝିଅକେ ରହିଥିଲା । ଖର ଖର ଗୃହିଲି, ଗର ଗର କଥା, କଳହୁଡ଼ୀ ସ୍ୱଭାବ । ପିଲାଙ୍କ ଦେହରେ କିଏ ଟିପ ଦେଲେ ସେ ବାଘୁଣୀ ପରି ମାଡ଼ି ଆସୁଥିଲା । ହେଲେ ଦଇବ ବିରୁଦ୍ଧରେ ତାର ଭୁଣ୍ଡ ଫିଟିଲା ନାହିଁ । ଭଲ ଘର, ଭଲ ବର ଦେଖି ତାକୁ ବିଭା ଦେଇଥିଲା । କୁସୁମକୁ ହେଲା ପାଗଳସିସ୍ । ଘର କଣରେ ପଡ଼ି ପଡ଼ି ଉପାସ ଆଉ ଅଣଦେଖାରେ ସେ ମଲା । ସ୍ୱାମୀ ଆଉ ସୁନା ଝିଅର ଅକାଳ ମରଣ ଖୁଲଣାକୁ ଅକାଳେ ବୁଢ଼ୀ

Digitized by srujanika@gmail.com

କରିଥିଲା । ତା ଗୁଡ଼ିକ ଚମଡ଼ା ଦି'ଖଣ୍ଡ ଦି'ଦିନର ଶୁଖିଲା କଖାରୁ ଫୁଲି ପରି ଦିଶୁଥିଲା ।

କୁସୁମର ଶୁଧିଆ ଘର ଯାଇଛନ୍ତି କି ନାହିଁ, ତା ସ୍ୱାମୀ ଆଉ ଥରେ ବାଘ ହୋଇ ପଡ଼ିଲା । ଓପାସରେ ଖୁଲଣାର ଗୁଡ଼ିଏ ବି କୋଡ଼ିଏ ଦିନ ଟଳି ପଡ଼ିଲା ।

ଓପାସଭୋକରେ ଏ ସାଇରେ କେତେ ଏମିତି ଟଳି ପଡ଼ନ୍ତି— କିଏ ସେ ଖବର ରଖେ ? ମାଛିଟିଏ ମଲେ ଯେପରି, ମଣିଷଟାଏ ସେହିପରି; ଜୀବନ ତ ବଢ଼ି ଗଲେ, ଗଡ଼ି ଗଲେ; କିଏ ଲୁହ ବୁହାଇବ କାହିଁକି ?

ଦିନେ ଭାବୁଥିଲି—ସୁବଳୟା ଓପାସରେ ମରିବା ଅପେକ୍ଷା ଚୋରି କରି ବଞ୍ଚିବା ଭଲ । ସେଇଆ କରି ପୃଥିବୀର ବହୁ ଲୋକ ବଞ୍ଚନ୍ତି, ବୋଧେ ଭଲ ଥାନ୍ତି । ଚୋରି ଧନରେ ବିଳାସବ୍ୟସନରେ ବୁଡ଼ିରହନ୍ତି ମଧ୍ୟ କେତେ, ବୋଧେ କୃତ ପାପକୁ ଭୁଲିବା ପାଇଁ ।

ପାରିଗଲାରୁ ସୁବଳୟା ମୁହାଁସରେ ପୁଅ ମାଟିଆକୁ ଲୋକ ଲଗାଇଲା । ମୋ ଭାବନାକୁ କାର୍ଯ୍ୟକାରୀ କରିବା ଲାଗି ବୋଧେ ଭସ୍ମାସୁର ପରି ମୋ'ର ମୁଣ୍ଡରେ ଆଗେ ହାତ ଲଗାଇଲା ।

ସୁବଳୟା କଥା ଭାବି ମନ କଅଣ ହୋଇଗଲା । ଚୋରି ଅଭି- ଯୋଗରେ ମାଟିଆକୁ ପୁଲିସ୍‌ରେ ଦେଲନାହିଁ ।

ବର୍ଷ ଅଧରେ ମାଟିଆକୁ ଛାଡ଼ିଲେ ଚାଷ ଚଳିବ କେମିତି ? ବିଧାନ୍ ସାପ ଥିଲା ଘରେ ରହିବା ଯାହା, ଚୋରକୁ ପ୍ରଶ୍ରୟ ଦେବା ସେଇଆ । ଚୋରି ତ ନୁହେ, ଭଗବାନ୍‌ଙ୍କର ଏ ସତର୍କ ବାଣୀ । ଯାକୁ ନ ମାନିଲେ ଘରେ କୋଡ଼ିଏ ଦିନ କଳା କନା ବୁଲିଇ ଦିବ ! ଚାଷ ସେ ବର୍ଷ ପଡ଼ିଆ ରହିଲା ସିନା, ମାଟିଆକୁ ଆଉ କାମକୁ ଡାକିଲି ନାହିଁ ।

ଏ ଘର ଉଦୁମା ଭୋଇର । ଉଦୁମା ପାଠୁଆ ଗାଆଣ । ରେଡ଼ିଓ, ସିନେମା ଯୁଗରେ ଘାଗଡ଼ା କଣ୍ଠର ଏ ବାଉରିଙ୍କ ପାଠୁଆ ଯାତ ଦେଖୁଛି

Digitized by srujanika@gmail.com

କଏ ? ଖଡ଼ୁ ପ୍ରାହୁଡ଼, ଗୁଣାବଣୁଣିପିନ୍ଧା ମାଇପିବେଶୀ ଅଣ୍ଡିରାଙ୍କ ଝୁମ୍ପଉଡାଣୀ ନାଚ, କର୍କଶ ଢୋଲ, ପେଙ୍କାଳ ସ୍ୱର ଆଉ କାହା ମନ ମୋହି ପାରୁଚ ?

ଗଲା ପଣାସଂକ୍ରାନ୍ତିରେ ଯାତ ହେଲା; ଦେଖାଳୀ ଗୋଠା କେତେ ଛୁଆ । ଏଥିରେ କୋଉ ଗାଆଣର ମନ ହବ ଗୀତ ବୋଲିବାକୁ ? ପାଟୁଆ ଯାତ ଭାଙ୍ଗିଲା । ଛପର ଅଭାବରୁ ଆଖେଡ଼ା ଘର ବି ହାମୁଡ଼େଇ ପଡ଼ିଲା ।

ଉଦୁମା ହେଲା କୁନ୍ନୀ ନେତା । ଗୋଠ ମାତିଲେ ଖଣ୍ଡିଆ ମାତିଲା ପରି ରାଜନୀତିକ ନେତାଙ୍କ ଗରମାଗରମ୍ ବକ୍ତୃତା ଶୁଣି ଉଦୁମା ମାତି ଉଠିଲା । ଆଜି ଏଠି ସଭା, କାଲି ସେଠି, ପ’ରଦିନ ରାଜଧାନୀରେ ପରେଡ୍ । ଘରୁ ଖାଇ କେତେ ଦିନ ଘୋଡ଼ା ଆଗରେ ଡେଇଁ ହବ ?

କଥା ଅଛି—

‘ନିତି ମୂଲିଆ ମୂଲେ ଯାଏ
ଦିନେ ନ ଗଲେ ଉପାସେ ଶୁଏ ।’

ସତରେ ବାଉରିମୁଣ୍ଡ, ଦିନେ କାମକୁ ନ ଗଲେ, ହାଣ୍ଡି ମାଙ୍କଡ଼ଚାଳ୍ ମାରେ । ଏ ଧନ୍ଦା ଉଦୁମାକୁ ପୋଷେଇଲା ନାହିଁ ।

ଦଇବେ ଏ ବର୍ଷ ଛିନ୍ ଛଟିଆ ବର୍ଷା, ଅପାଳକ । ଧାନ ଫୁଲ ଉଡ଼ଉଥିବା ବେଳେ ଏକାବେଳକେ ବର୍ଷା ଛିଡ଼ି ଗଲା । ଭୂଇଁ ଫାଟି ଆଁ କଲା; କେଣ୍ଡା ଆଉ ମୁଣ୍ଡ ନୋଇଁଲା ନାହିଁ—ଅଗାଡ଼ି ମାଳ ।

ଗହୀରକୁ ଚାହିଁଲେ ହଁସା ଉଡ଼ିଗଲା ପରି ଲାଗିଲା । ଚଳେଇବେ, ଚଳେଇବେ ହରିଚନ୍ଦ୍ର, ପଦାଞ୍ଚଳ ସରକାରୀ ସାହାଯ୍ୟ, ସମୁଦ୍ରକୁ ଶଙ୍ଖେ ହେଲେ ବି ।

ଲୋକେ ଖାଇବାକୁ ହାଁ ହାଁ ହଉଥିବା ବେଳେ ଉଦୁମାର ନେତାଗିରି ବାହାରିଲା । ସେ ଭୋକିଲାଙ୍କୁ ମତେଇ ଟ୍ରକେ ଗହମ ଲୁଟି

Digitized by srujanika@gmail.com

କରିନେଲା । ଏ ଲୁଟ୍‌ପାଟ୍ ପରେ ସରକାରୀ ସାହାଯ୍ୟ ବନ୍ଦ ହେଲା । ଉଦୁମାର ନେତାଗିରି ବି ଶେଷହେଲା ।

ଖାଇବା ବିନା ପିଲେ କେଁ-କାଁ ହଉଥିବା ବେଳେ ଭେଣ୍ଡା ପୁଅ ଚକଡ଼ି ମଙ୍ଗ ସମ୍ଭାଳି ନେଲା । ହେଲେ ଭାଗ୍ୟ ବିପରୀତ । ସେ କୋଠା କାମ କରୁ କରୁ ତଳେ କଚୁଡ଼ି ହୋଇ ପଡ଼ିଲା । ତା କରଣୀ ଚାଲିଥିଲା ତ, ଚଣ୍ଟୁ ବୁଲୁଥିଲା । ରୋଜଗାରି ପୁଅ ଅଚଳ ହୋଇ ପଡ଼ିବା ପରେ ପରିବାର ବି ଅଚଳ ହୋଇଗଲା । ଏ ଅବସ୍ଥାକୁ ଗାଁ ଲୋକେ ସମ୍ଭାଳି ନେଲେ, ଉଦୁମାର ପରୋପକାରୀ ଭାବ କଥା ମନେ ପକାଇ ।

ଘାସ ଟୋକ୍ରୀ ମୁଣ୍ଡେଇ ଆସୁଚି, ଏଇ ଯୋଉ ହାଡ଼ିଆକୁ ଦେଖୁଚି, ଏ ତା'ରି ଘର । ସ୍ୱପ୍ନରେ ମା ମଙ୍ଗଳାଙ୍କ ଅାଜ୍ଞା ପାଇ ହାଡ଼ିଆ କାଳସୀ ହେଲା । ଠାକୁରାଣୀଙ୍କ ନିଜ ଲୋକ । ଏ ଉଭା ହେଲେ ଗାଁ ଲୋକେ ଥରନ୍ତି—କେଣ ନାହିଁ କେଣ ଅଘଟଣ ଘଟାଇବେ—ଏଇ ଭୟ ।

ବିଷୁବ ସଂକ୍ରାନ୍ତିରୁ ମାସେ ପାଣ୍ଟୁଆ ଯାତ୍ରା କରି ଯୋଉ ଆୟ ହୁଏ, ସେଥିରୁ ଅଧେ ହାଡ଼ିଆ ମଙ୍ଗଳାଙ୍କ ପାଖେ ପରିଠ କରେ । ବାକୀ ଅଧକରେ ଅାଖେଡ଼ାଘର ମରାମତି ଆଦି କାମ ହୁଏ ।

ଯାତର ମାଗଣ ଅୟରେ ବାଉରିମାନେ ମଙ୍ଗଳାଙ୍କ ଦେଉଳ ତୋଳେଇଛନ୍ତି, ପୂଜା ଖଞ୍ଜିଛନ୍ତି । ମଙ୍ଗଳା ବାଉରିଙ୍କ ପ୍ରତିଷ୍ଠିତା ଦେବୀ, ସମଗ୍ର ଗାଁର ଇଷ୍ଟଦେବୀ । ଉଚ୍ଚ ବର୍ଣ୍ଣର ଲୋକେ ବିଭିବ୍ରତରେ ଏଠିକି ବି ମଙ୍ଗଳା ଆସନ୍ତି ।

ଠାକୁରାଣୀ ହେଇ ଉଭା ହେଲା ବୋଲି ହାଡ଼ିଆ ପାପ ବୋଲି ଯାହା ଭାବେ, କରେ ନାହିଁ । ମିଛ କହେ ନାହିଁ କି କାହା ବିଲରୁ ଧାନ ଶିଣ୍ଡାଟିଏ ଛିଣ୍ଡାଏ ନାହିଁ । ପାଇଲେ ଖାଏ, ନ ପାଇଲେ ଓପାସେ ଶୁଏ । ଗେଣ୍ଡା, କୋଚିଆ, କଇଁଛ, ବ୍ରାହ୍ମଣିଆଁ ବେଙ୍ଗ ଡିଅଣ ତା ପତରରେ ପଡ଼େନାହିଁ । ଦେବଦ୍ୱିଜେ ଭକ୍ତି । ମାନ୍ୟଙ୍କୁ ଭୂଇଁରେ ମୁଣ୍ଡ ଲଗାଇ ଓଳକି ହୁଏ ।

Digitized by srujanika@gmail.com

ଯୋଉ ମୁହଁରେ ମଙ୍ଗଳାଙ୍କ ସ୍ତୁତି ବୋଲୁଥିଲା ଏତେ ପାଟିରେ, କୋଉ ଦୋଷରୁ ସେ ମୁହଁରେ ଘାଆ ହେଲା ଓ ଗୋଟା ମୁହଁକୁ କଳ ଯାଏ ଖାଇ ଖାଇ ଗଲା । ରକ୍ତ ମାଉଁସ କୁଆଡ଼େ ଉଭେଇ ଗଲା, ଖାଲି ହନୁ ମାଡ଼ ! ବ ଭଡ଼ ଦାନ୍ତ ଦେଖିଲେ ଡର ମାଡ଼ୁଥିଲା ।

ଶେଷକୁ ତୋଟିରେ ପାଣି ଗଳଲା ନାହିଁ । ପଦେ କଥା ସୁ ସୁ ହୋଇ ବାହାରୁଥିଲା—ମା ଦୂତ ପଠେଇଲେ । ଏଥର ତାଙ୍କ ପାଖେ ରହି ସେବା କରବ !

ଯେତେ ଭଲ, ଯେତେ ଭକ୍ତ ହେଲେ ବି ପୂର୍ବ ଜନ୍ମକୃତ ଅକର୍ମ ଫଳ ଭୋଗ କରବାକୁ ହେବ । ସେଥିରୁ ନିସ୍ତାର ନାହିଁ । ରାମକୃଷ୍ଣ ପରମହଂସଙ୍କୁ ଶେଷ ବୟସରେ ମୁଖ କର୍କଟ ରୋଗ ହେଲା । ସେ ନ ଖାଇପାର ଯନ୍ତ୍ରଣାରେ ବିକଳ ହୋଇ ମାଆଙ୍କୁ ଡାକଲେ । ମାଆ ଦେଖା-ଦେଇ କହିଲେ—ଏତେ ଲୋକଙ୍କ ଖିଆପିଆରେ ତୋ ପେଟ ପୂରୁନ ? ତୁ ଦର ସିଦ୍ଧ ପୁରୁଷ !

ତାପରେ ଅନନ୍ତା ଭୋଇର ଘର; ଅନନ୍ତା ମୋହମଣ୍ଡଆ । କଥା ଭାଙ୍ଗିପାରେ ନାହିଁ—'ପଇଡ଼ଟେ ତୋଳ ଦେ—ପୂର୍ଣ୍ଣକୁମ୍ଭ ବସିବ; ବଳଦଟା ଫିଟିଗଲା, ଟିକଏ ବାନ୍ଧି ଦେ । ଉଆଡ଼ରୁ କାଡ଼ି ଜାଳ ଦିଖଣ୍ଡ ଦେ ।' ସାନ୍ତାଣୀମାନଙ୍କର ଏମିତି କେତେ ବୋଲହାକ କରେ । ସେମାନେ ବି ଓଷାବାଅରେ ପିଠାପଣା ହେଲେ ଅନନ୍ତାକୁ ଡାକ ଦେଇଥାନ୍ତି ।

ବୃଷର ବାଗସାଗ ଜାଣେ, ନିର୍ଲୋଭ । କାମ ନିଦା । କଥା ସିଧା । ଯୋଉ କଥା ତା ମନକୁ ନ ଆସେ, ସେ ମୁହଁ ମୋଡ଼ଦେଇ ଯାଏ । ହରବ୍ରହ୍ମା ହେଲେ ତା ହାତରେ ସେ କାମ କରେଇନେଇ ନ ପାରେ । କାମ ତା ମନଧେନା ହେଲେ ସେ ପାହାଡ଼ ଟାଳେ ।

ନିଜର ହଉ କି ସାଂନ୍ତ ଘର ହଉ, ସେ ଗତର ଖଟାଇ କାମ କରେ । ତା କାମ କେହି ତନଖିବା ଲୋଡ଼ା ପଡ଼େ ନାହିଁ । ସାଂନ୍ତ ତାକୁ ବିଲକୁ ପଠାଇଦେଇ ନିଶ୍ଚିନ୍ତ ରହେ । ଖୁବ୍ ଅଭାବୀ ହେଲେ ବି

Digitized by srujanika@gmail.com

ସଙ୍କୋଚ । ଧାନ, କୋଳଥ, ବିରି କି ରାଶି ବହନ ବୁଣିବାକୁ ନେଲେ ସେ ବାଟମାରଣା କରେନାହିଁ ।

ତା ଭାଗ୍ୟକୁ ଦେଖ—ଅକାଳେ ଘରଯା ମଲା, ତା ହାତରେ ପୁଅଟିଏ ଦେଇ । ତାକୁ ବଡ଼ କଷ୍ଟରେ ଅନନ୍ତା ମଣିଷ କଲା । ବୟସ ହେଲାରୁ ହାତକୁ ଦିହାତ କଲା । ସାତମଙ୍ଗଳା ଯାଉନାହିଁ, ଶାଶୂଶଶୁର ଶିଖାରେ ପଡ଼ି ସେ ବାପକୁ ଭିନେ କଲା ।

କେତେ ଦିନୁ ଅନନ୍ତା ଅବଶ୍ୟ ଜଣେ ବୟସ୍କା ମାଇପିକୁ ହାତ-ଖଣ୍ଡୁ ହୋଇ ଘରକୁ ଆଣିଥିଲା । ଦୁଷ୍ଟାପୁ ହେଲା ଘରଯାର ତିନୋଟି ପିଲା । ସାବତ ମାଆ ହୀନମାନ କରିବ, ପିଲାମାନଙ୍କୁ ପୋଷିବାକୁ ପଡ଼ିବ—ଏ ଉପରେ ଅବଶ୍ୟ ବଡ଼ ପୁଅ ଅଲଗା ହୋଇଥିଲା । ବୁଢ଼ା ଦିନେ ବଡ଼ ପୁଅ ପୋଷିବ ବୋଲି ଅନନ୍ତା ଯୋଉ ଭରସା କରିଥିଲା, ତା ଏତିକରେ ବୁଡ଼ିଲା ।

ପାଖରେ ହା. ସ୍କୁଲ, ବହୁ କଷ୍ଟରେ ଦ୍ୱିତୀୟ ପୁଅକୁ ପଢ଼େଇ ମାଟ୍ରିକ୍ ପାସ୍ କରେଇଲା । ହରିଜନ; ଚାକିରି ଖଣ୍ଡେ ମିଳିଯିବ, ଏଇ ଆଶାରେ । ବହୁତ ଦଉଡ଼ ଧାପଡ଼ ପରେ ଅନନ୍ତା ମୁଣ୍ଡରେ ହାତ ଦେଇ ବସିଲା । ମୂଳିଆ ମୁଣ୍ଡ; ତା ଆଗରେ ହାତ ପାତିବାକୁ ଏ ସଫାସୁତରା ହାକିମଙ୍କୁ ଲାଜ ମାଡ଼ୁନାଇଁ ? ନୂଆ ଦେଶର ଏ ନୂଆ କାଙ୍ଗାଳ—କେଡ଼େ ସଫାଚୋଫା ବେଶ ! ମନଟା କି କୋତରା, ଅସକରା !

ଗୃହଆଡ଼େ ଫେଲ୍‌ମାରି ଶେଷକୁ ମାଟ୍ରିକ୍ ପାସ୍ ପୁଅକୁ ପେଟ ଦାୟରେ ମୂଲ ଲଗାଇଲାବେଳେ ଅନନ୍ତାର ଛାତି ଫାଟିଗଲାପରି ଲାଗୁଥିଲା । ଦୁଶ୍ଚିନ୍ତା ତା ମନକୁ ଭାଙ୍ଗି ଦେଇଥିଲା । ପେଟକୁ ଦାନା ନାଇଁ । ନିଜେ କାମକୁ ପାରୁ ନ ଥିଲା । ରୋଗଶଯ୍ୟାରେ ପଡ଼ି ସେ ବହୁ ଦୁଃଖ ଭୋଗିଲା । କତରାଲଗା ହୋଇ ବି ତା ଜୀବନ ଛାଡ଼ିଲା ନାହିଁ । ଗାଁ ଲୋକେ ସନ୍ଦେହ କରି ପଚାରିଲେ—କହ, କହ, କି ପାପ କରିଚୁ ? ନଇଲେ ଜୀବ ଛାଡ଼ିବ ନାହିଁ । ରୋଗ ଯନ୍ତ୍ରଣାରେ ଭୂଇଁରେ ଗଡ଼ି ଛଟପଟ ହଉଥିବୁ ।

Digitized by srujanika@gmail.com

ବଡ଼ି କଷ୍ଟରେ ଅନନ୍ତାର ଜିଭ ଲେଉଟିଲା । ସେ କହିଲା— ମାଈ ପଶୁକୁ ମାଇପ କରଚ ! ଘୃଣା କରନା । ମୋ ଅପ୍ରାଧ······

ମନ କଣ ହୋଇଗଲା; ତାପରେ ବି ସମୁଦ୍ର ଘରକୁ ଫେରିଲେ; କାନରେ ପଡ଼ୁଥିଲା ପାଖ ଗହ୍ୱରର ଏଇସବୁ ହଳିଆ ଗୀତ—

'ଧାନ ମହରଗକୁ ନ ମିଳଇ ମୂଲ
ସାହୁ ପଗ୍ରରଇ କେତେ କାମ କଲ
ଗୃହ ବନେ ମଜୁଛି ଅଗାଡ଼ ଧାନ ଦେଲ ହେ ।'

'ସାହୁର ଜଞ୍ଜାଳ କୁଟୁମ୍ବର ଦୁଃଖ
ଏ ପ୍ରାଣୀମାନଙ୍କୁ କେବେ ନାହିଁ ସୁଖ
ସାହୁକୁ ଦେଖିଲେ ଖାତକ ଆସୁଚି ଯମଦୂତ ହେ ।'

'ବଡ଼ ହଡ଼ା ପଗ୍ରରଇ ସାନ ହଡ଼ା ଭାଇ
ଅନ୍ନ କଷ୍ଟରେ ଯେ ଅଣ୍ଟା ଉଠୁନାହିଁ
ସାହୁକୁ କହିବୁ ଲଙ୍ଗଳ ଜୁଆଳି
ଜୋତ ଦଉଡ଼ା ବଳରୁ ନଉ ବୋହି ।'

Digitized by srujanika@gmail.com

## ॥ ସାତ ॥

ସନ୍ତୁ—ତମ ଆଡ଼େ ଏତେ କନିଆର ଫୁଲ ! କଣ କହିବେ କହିବେ ହୋଇ କହିପାରୁ ନାହାନ୍ତି । ହଳଦି ଗୁରୁଗୁରୁ ରୂପ, ଡୋଳା ନ ଥିବା କାନ୍ଦୁରି ଗୃହିଣୀ ବେଶ୍ ମନ ଛୁଏଁ ।

ମିଛୁ—ଏ ଫୁଲଟି ଗୋଟାପଣେ ଗାଁର; ଗାଁ ଜୀବନ ସହିତ ପୂରାପୂରି ମିଶି ରହିଛି । ଯୋଉଠି ଦେଖ, ସେଠି । ମନକୁ ଉଠେ, ଫୁଟେ । ଗ୍ରୀଷ୍ମ ଖରାରେ ଝାଉଁଳେ ନାହିଁ । ଅନାବନା । କାହାରି ଲାଳନା ଲୋଡ଼େନାହିଁ । ଗାଁ ଠାକୁରଣୀ, କୁଆଁରୀଙ୍କ ଖୁଦୁରୁକୁଣୀ ବାଲୁଙ୍କା ଠାକୁର ଲାଜକୁଳି, ପାଣିକଖାରୁ ଫୁଲ ସହିତ ଏହାକୁ ଗିନନ୍ତି । ଗାଁ କନିଆଁମାନେ ଏହାର କଡ଼ିପେନ୍ଥା ଦରଫୁଟା କରି କାନରେ ନାକରେ ପିନ୍ଧି ନାଚନ୍ତି; ପୁଚି ଖେଳନ୍ତି, ଏହା ଫୁଲ ଡେମ୍ଫରୁ ମହୁ ଶୋଷନ୍ତି । ଘଇତା କୋଡ଼ମାଡ଼ କି ଶାଶୂ ନଣନ୍ଦ ଗଞ୍ଜଣା ସହି ନ ପାରିଲେ ଏହାର ଫଳ ଖାଇ ସବୁ ଦିନ ଲାଗି ଶୋଇପଡ଼ନ୍ତି ।

ସନ୍ତୁ—ବଡ଼ବଡ଼ଆଙ୍କ ଠାକୁର ଏହାକୁ ପାଖରେ ଛୁଅନ୍ତି ନାହିଁ, ବାସନା ନାହିଁ ବୋଲି । ରୂପ, ଗୁଣ ଏକାଠି କାହା ପାଖେ ବା ରହିଛି ? ଏହାର କାନ୍ଦ କାନ୍ଦ ଆଖି ଯୋଉଠି ଥିଲେ ବି ଗାଁ କଥା ମନେ ପକାଇ ଦିଏ ।

ମିଛୁ—ଚାଲ ସମୁଦ୍ର, ହୋଇ ସାଇର ଆଉ କେତୋଟି ଘର ବୁଲି ଦେଖିବା ।

ସନ୍ତୁ ଫୁଲ ଉପରୁ ଆଖି ଫେରାଇ ଆଗେଇଲେ; ଏଇ ସମୟରେ ପାଖ ପୋଖରୀ ହୁଡ଼ାରୁ କାନରେ ବାଜିଲା ମଇଁଷିଆଳର ଧୁଡ଼ୁକ୍କ ଗୀତ—

Digitized by srujanika@gmail.com

'ଶାଣ୍ଢି ଉଠିଗଲେ ଡଗର ବାଟେ ଲୋ
ବାଛୁରୀ ଶୋଇଲେ ଗୋଠେ
ବେହେରା ଝିଅର କା ପ୍ରକୃତି ଲୋ
କାନ୍ଧଇ ଗାଧୁଆ ତୁଠେ ।
ବେହେରା ଝିଅ ତ ଦୁହିଁଲେ ଦୁଧ ଲୋ
ଦହିରେ ନାହିଁ ଲହୁଣୀ
ଗାଈ ଉଠିଗଲେ ଡ଼ଗର ବାଟେ ଲୋ
ଷଣ୍ଢ ପିଉନାହିଁ ପାଣି ।
ଗାଈଆ ଗଉଡ଼ ଭଲ ନଇଲେ ଲୋ
ଗାଈଆ ଗଉଡ଼ ଭଲ
ମଇଁଷିଆ ଗଉଡ଼ ବଡ଼ ପାପିଆ ଲୋ
ଛତା ତଳେ ଧନ ଗଲ ।
ଧୁଡୁକି ବାଜଇ ରଙ୍ଗେ ନଇଲେ ଲୋ
ଧୁଡୁକି ବାଜଇ ରଙ୍ଗେ
କେତେ ରଙ୍ଗରେ ତୁ ବଜାଉ ଧୁଡ଼ୁକି
ମୁଁ ଯିବ ତୋହର ସଙ୍ଗେ ।
ମଇଁଷି ପଡ଼ିଲେ କଲରା ଗଣ୍ଡେ ଲୋ
ଦୁଧ ପୋଟଳାରେ ଜୋକ
ଭାଇଙ୍କ ପାଖକୁ ଚିଠାଉ ଲେଖ ରେ
ଜନ୍ମଚର ବଡ଼ ଦୁଃଖ ।'

ଏଇ ଗାଁ ଏ ଯୁଗକୁ କଣ ହେଇଗଲରେ ! ଏଠି କାହା କଥା କିଏ ବୁଝୁଚି ? କାହା କଥା କିଏ ବା ମାନୁଚି ? ଯେଝା ହାତରେ ସେ ଚଉଦ ପା ।

ଭାଗବତଟୁଙ୍ଗୀ ଛପର ଉଡ଼ିଯାଇଚି, କାନ୍ଥରୁ ଅଠଡ଼ା ଛାଡ଼ିଲାଣି । ଗାଁର ହାନିଲାଭ ବିଷୟର ଲାଗି କୋଉଠି ସଭା ବସୁନାହିଁ । ପୁରାଣରୁ ମନ ଛାଡ଼ିଚି । ସଂକୀର୍ତ୍ତନ, ପାଠୁଆ ଯାତ ଭାଙ୍ଗିଚି । ସିନେମାକୁ ମନ । ଗାଁର

Digitized by srujanika@gmail.com

ଦଳ ଦଳ ଯୁବତୀ ସ୍ତ୍ରୀ ଟ୍ରାକ୍ଟର ଡାଲରେ ବସି ଦଶ ମାଇଲ୍ ଦୂର ସିନେମା ଦେଖି ଚାଲିଯାଉଛନ୍ତି ।

ଗାଁରେ ରାଜମାଡ ପଶିଚ, ବଭେଦ ଆସିଚ । ସ୍ୱା ମୁହଁକୁ ସେ ଚାହୁଁ ନାଇଁ, ତା ମୁହଁକୁ ସ୍ୱେ । କାହାକୁ କେହି ଡରୁଂ ନାହାନ୍ତି; ମାନ୍ୟ-ଗଣ୍ୟଙ୍କୁ ଦଣ୍ଡବତଟିଏ ବ ହଉ ନାହାନ୍ତି ।

ଗାଁରେ ଚୈର ପଶିଚନ୍ତି । ଅଳଙ୍କାରପଣ ତ ଦୂରର କଥା । ବାସନକୁସନ ବ ଖଣ୍ଡେ ରହୁନାହିଁ । ତାଙ୍କ ଦେଖା ଦେଖି ଗାଁର କେତୁଟା ଟୋକା ବାଡ଼ରେ ଖଡ଼ାପଣଟାଏ କ ନଡ଼ିଆକସିଟାଏ ରଖି ଦଉ ନାହାନ୍ତି ।

ଗାଁର ସନ୍ଧବା ଶକ୍ତ ଓଣା ପଡ଼ିଚ; ଟିକେ ଟିକେ କଥାରେ ଧରାଧର ପଗପର ହୋଇଯାଉଛନ୍ତି, ଥାନାକୁ ଧାଇଁ ଯାଉଛନ୍ତି କ ମକଦ୍ଦମା ଦାୟର କରିଦେଉଛନ୍ତି ।

ଆରେ ଏ କଣ ହଉଚ ବା ? କ ଅକଥା ସବୁ ଘଟୁଚ !

ସଙ୍ଗାତ, ମଇତ୍ର, ଓଶକା, ଗଙ୍ଗାମୁଗ, କର୍ଣ୍ଣିକାକୁଡ଼, ମକର, ବଉଳ, ମଉସା ମାଉସୀ, ଅଜା, ଆଈର ସ୍ନେହ ସମ୍ପର୍କ ଗଲା କୁଆଡ଼େ ?

କ ମିଛୁଆ, ବାହାପିଆ, ଚାଲ୍‌ବାଜଆ ଲୋକ କୋଉ ଲଙ୍କା ବା ବିଲଙ୍କାରୁ ଅଇଲେ ବା !

ଶୁଣୁନା ଏ ଅଗାଧୁଆ ଘର କଥା; ଶୁଣିଲେ ତୁମେ ତାଜୁବ୍ ହବ, ହେ ସମୁଦ୍ର ।

ଅଗାଧୁଆ ଅଡ଼ୁଣିଆ; ଗାଧୁଆ ଅଗାଧୁଆକୁ ଛୁଇଁଲେ କାୟା ମାର୍ ହୁଏ, ସେ ପୁଣି ଗାଧାଏ । ଯମ ସେ ଧନ୍ଦା କରବାକୁ ଯିବ କାହିଁକ ? ନ ଛୁଇଁଲେ ନଷ୍ଟ ଗଲା । ଏମିତକା ଅଗାଧୁଆ ବର୍ତ୍ତିଗଲା ।

ସବୁ ମଫସଲଆ ଭୋଇଙ୍କ ପରି ଅଗାଧୁ ସକାଳୁ ଉଠିଲେ ଲଙ୍ଗଳେ·······; କୁହାଟାଏ, ଆବୁଆଟାଏ, ଦୁଃଖୀରେ ମହାଦୁଃଖୀ ସେ ।

Digitized by srujanika@gmail.com

ବାପଠାରୁ ପୁଅ ଭିନେ ହେବା ତ ବାଉରିସାଇର ନୂଆ କଥା ନୁହେଁ । ଗୃହବାନ୍ଧା ସୁସ୍ଥ ଥିଲେ ମାଟିରେ ମିଶିବା ଯାକେ ଘେରି ଖଟୁଥାଏ ।

ଅଗାଧୁଆର ଗୋଟିଏ ବୋଲି ପୁଅ—ନକୁଲା । ବିଭା ହେଲା ପରେ ନକୁଳ ବାପଠୁ ଅଲଗା ହୋଇଗଲା ।

ପୁଅ ପାଖରେ ଥିଲେ ବାପ କଣ ଖଟେନାହିଁ ? ବସେଇ କିଏ କାହାକୁ ଖାଇବାକୁ ଦିଏ ? ତେଣୁ ଭିନେ ହେଲା ବୋଲି ଅଗାଧୁ ଭାବନା କରିବ କାହିଁକି ?

ଆରେ ଏ ବାଉରି ଘରେ ପେମଫେମ କଥା ତ କେବେ ନଥିଲା, ଏବେ ପଶିଲା କେମିତି ?

ପେଟ ପଡ଼ୁଥାଏ ହାକୁ ହାକୁ, ଧନ୍ଦା କରୁ କରୁ ଦିନ ଯାଏ । ଉଜନଟା ଛୁଆ ଘରେ ଖାଇବା ବିନା ହାଇଁପାଇଁ, ସ୍ୟାଡ଼ିକ ନଜର ନ ଦେଇ ଓହୋ ! ନକୁଳା ଘେରି କେଡ଼େ ସାହସ କଲା ! ହରିବ ସୋଇଁର ବଡ଼ିଲା ଝିଅକୁ ଦିନେ ଘେନ ପାର୍ !

ଝିନା ! ସୁନ୍ଦରୀ ବୋଲି ଯାହାକୁ କହନ୍ତି ! ବୁଢ଼ା ହେଲେ ବି ସେ ଗୃଲିଗଲା ବେଳେ ଘଡ଼ିଏ ଗୃହିଁବ, ବାରବୁଲା ଆଖି ଠକ୍‌କିନେ ଅଟକି ଯିବ ସେଠି ।

ବୁଢ଼ା ଅଗାଧୁଆ ମୁଣ୍ଡରେ ଏବେ ବୋହୂ ଓ ନାତିଙ୍କ ପୋଷିବା ଭାର ପଡ଼ିଲା, ତା ବେକ ଭାଙ୍ଗିଗଲା ପରି ଲାଗିଲା । ସାଇଭାଇ ଆଉ ଉବାବି ଲୋକ ପୁଅର ଅପକାର୍ତ୍ତି ଲାଗି ଅଗାଧୁଆ ଆଉ ତା ମାଇପକୁ କେଳେଇ କୁଟି ଖାଇଗଲେ । ତା ଚିନ୍ତା ତ ତାକୁ ଖାଇଲା । ସେ କାହାକୁ ବା କ ଜବାବ୍ ଦବ ?

ସୋଇଁସାଇଆଙ୍କ ଜାତିକୁଲମାନ ତଳକୁ ଖସିଲା । ସେମାନେ ଓର ଉଣ୍ଡି ବୁଲିଲେ । ନକୁଳାକୁ ପାଇଲେ ତା ମୁଣ୍ଡ ଛେଚି ଦନ୍ତ ବାହାର କରିଦେବେ ! ହେଲେ ତାର ଲାଞ୍ଜ ନ ପାଇ ରଡ଼ିବେଇ ଖଡ଼ିବେଇ ହେଇ ରହିଲେ ।

Digitized by srujanika@gmail.com

ହରିବ ସୋଇଁ ଗତର ଝଟେଇ କୁଟୁମ୍ବ ପୋଷେ ନାହିଁ । ସ୍ତ୍ରୀ ତାର ବେଉସା । ରାତିରେ ହି ଗୃହ ଖେପାରେ ଡେଙ୍ଗା ଡେଙ୍ଗା ନଡ଼ିଆ ଗଛକୁ ଉଠିଯାଏ । ଦଉଡ଼ି ସାହାଯ୍ୟରେ ନଡ଼ିଆ ପେଣ୍ଡାସବୁ ବିନା ଶବ୍ଦରେ ତଳକୁ ଖସାଇ ଦିଏ ।

ସ୍ତ୍ରୀରର ଗରାକ ଆଖପାଖ ଗାଁର କେତେ ଜଣ ଥିଲାବାଲା, ଯାହାର ଲୋମଟାଏ ବି ସହଜରେ ବଙ୍କା କରି ହବନି । ଯାହାଙ୍କ ସକାଶେ ପ୍ରକୃତରେ ସ୍ତ୍ରୀ ହଉଚି, ସେ ଝାଡ଼ଝୁଡ଼ି ହୋଇ ବସନ୍ତି । ତାଙ୍କୁ ଧରାଓଟେଳା କରିବାର ସାହସ କାହାର ?

କେତେ ସ୍ତ୍ରୀରଙ୍କୁ ହାତ କରି ଗାଁରେ ଏଇ ଦଲାଲ୍‌ଙ୍କ ନଡ଼ିଆ ବେପାର ଚାଲେ । ଭଲଲୋକ ଭାବେ ଗଣିତା, ନ୍ୟାୟ କରି ବସନ୍ତି, ଏଇ ସ୍ତ୍ରୀ ଓ ଡାକୁଗିରିର ଅବତାରମାନେ । ସବୁ ଖାଇପିଇ ମୁହଁ ହାତ ପୋଛି ସଫାସୁତୁରା ହୋଇ ବାହାରନ୍ତି ଏଇମାନେ ।

କନ୍ୟାଦାୟରୁ ମୁକ୍ତ ଚାହୁଁଥିବା କେହିଜଣେ ସ୍ତ୍ରୀର ହରିବ ସୋଇଁକୁ କନ୍ୟା ଦେଲା, "ଦେଲା ନାହିଁ ହେଲା ପାରି" ହୋଇ ରହିଲା । ଏଇ ସଂସାରରେ ବିନା ନମିତ୍ତରେ କେହି ବାଁଧର କରେ ? ହରିବ ହବ ହବ ବୋଲି ହୋଇନାହିଁ । ଏ ଭିତରେ ଗୋଟାକ ପରେ ଗୋଟାଏ ହୋଇ ହି ଝିଅ, ତିନ ପୁଅ ହେଲେଣି । କାହାର ହେଜ ଅଛି ? ହରିବ ସୋଇଁଠୁ ଭୋଜ ଆଦାୟ କରିବ !

ବୟସ ହବାରୁ ହି ଝିଅରୁ ଗୋଟିଏ ତୋଳା କନ୍ୟା କରିଦେଲା । ଆଉ ଗୋଟିଏ ଘର ବାହାର ଚାରିଆଡ଼ ଆଲୁଅ କରି ଚାଲିଲା ।

ଚମ୍ପାଫୁଲ ପରି ରଙ୍ଗ, ସବୁବେଳେ ଚଙ୍ଗ ଚଙ୍ଗ । ଅଣ୍ଟା ସରୁଆ, ଗୁଡ଼ି ଓସାରିଆ । ନକୁଳା ଉପରେ ତା ଆଖି ପଡ଼ିଲା, ମନ ଭଲଗଲା । ତା ସଙ୍ଗେ ସଲା କରି ଦିନେ ରାତି ଅଧରେ ଘର ଛାଡ଼ି ପଳାଇଗଲା ।

ଏଡ଼େ ସୁନ୍ଦରୀ ଝିଅକୁ ସେ କୋଉଠି ବା ସମ୍ଭାଳି ରଖି ପାରିବ ? କଲିକତାର କୋଉ ଦଲାଲ୍ ବେଶ୍ୟାପଡ଼ା ଲଗି ତାକୁ ହରଣଚାଲ୍ କରି ନେଲେ ଆଶ୍ଚର୍ଯ୍ୟ ହେବାର କଣ ଅଛି ?

Digitized by srujanika@gmail.com

~ ମାଡ଼ ଭୟରେ ନକୁଲା କଣ ଆଉ ଗାଁକୁ ଫେରିବ ? ତା ପିଲାପିଲି ଚଳିବେ କେମିତି ? ଅଗାଧୁଆ ଶୋଇଲା ପରି ହୋଇ ଚାଲିଛି, ପେଟପାଣି ଢୋକେ ଢୋକେ ପେଇ ପିଲାକୁଟୁମ୍ବଙ୍କୁ ବଞ୍ଚେଇଛି ।

ନିଜେ ଭଲ ତ ଦୁନିଆଁ ଭଲ—ପାଣୁଆ ଭାବେଇ କହେ । କଣ୍ଟା-ବଣରେ ନ ପଶିଲେ ଗୋଡ଼ରେ କଣ୍ଟା ପଶିବ କାହିଁକି ? କାଦୁଅରେ ଚାଲିଲେ ଇ ଗୋଡ଼ ଧୋଇବାକୁ ପଡ଼େ । ନିଜ ବାଟରେ ନିଜେ ପାହୁଣ୍ଡ ଜଗି ଚାଲିଲେ ତମର କିଏ କଣ କରିପାରିବ ?

ଏବେ ଅନୁଭବରୁ ବୁଝିଲା—ତା ଭାବନା ଭୁଲ୍ । ତମେ ଭଲ ଚାଲିଲେ ବି କେତେ ଲୋକଙ୍କ ଦିହରେ ଯାଏନାହିଁ । ସେମାନେ ବାଟରେ କଣ୍ଟା ପୋତନ୍ତି, ଖାଲ ଖୋଳନ୍ତି; ତମକୁ ଖାପ୍‌ଚାରେ ପକାଇଦେବାକୁ ଚେଷ୍ଟା କରନ୍ତି । ଗାଁରେ ଏମିତି ହିଂସିକୁଟିଆ, ପରଘରଭଙ୍ଗା ଅଛନ୍ତି, ଯେ ନିଜେ ସୁଖରେ ରହିବେ ନାହିଁ, କି କାହାକୁ ରଖେଇ ଦେବେ ନାହିଁ ।

ଏବେ ପାଣୁଆ ବୁଝିଲା—ଭଲ ହେଲେ ବି ଦିନ ସୁରୁଖୁରୁରେ କଟି ନ ପାରେ । ଲୋକେ ଟିକିଏ କୋଉଠି ଅଡ଼ୁଆ ଦେଖିଲେ ତା ଭିତରେ ମୁସ୍କିଲ୍ ଭର୍ତ୍ତି କରିଦିଅନ୍ତି ।

ବାଉରି ଭଙ୍ଗାଦଦରା ଘରେ ଦରଲଙ୍ଗଳା, ଦରଓପାସିଆ ରହିଲେ ବି ଶାନ୍ତିରେ ଚଳେ । ଉପରପାହ୍ୟା ଲୋକେ ସେଇ ଝୁଡ଼ିଉଲୁରା ଘରେ ବେଳେବେଳେ ପୂରାଇ ଦିଅନ୍ତି ଖଣ୍ଡିଆ ଭୂତ । ମିଛକୁ କାହିଁକି ଆମେ କହୁ, ସାଆନ୍ତଙ୍କ ବଗୁରବୁଦ୍ଧି ସରସ ବୋଲି ? ସରସ ନା ଫରସ ! ଦେଖୁନା—ଏ କଣ ହେଲା ?

ହୁରୁଷିଆ ପଣ୍ଡା, ମୁହଁରେ ଦାଢ଼ି, ବାବାଜିଙ୍କ ଘଟାଟୋପ । କିଏ କାହିଁକି ବୁଝିବ ପ୍ଟା ଭିତରେ ଏତେ ଦୁଷ୍ଟ ବୁଦ୍ଧି ଅଛି ବୋଲି ?

ହୁରୁଷିଆ ଭୋଳାର ପୁଅ; ଭୋଳାର ବାପା ବନେଇ; ସେ ଯଦି ଜାଣିଥାନ୍ତେ, ମଲା ପରେ ପୁଅ, ନାତି ସବୁ ସମ୍ପତ୍ତି ବରବାଦ୍ କରିଦେବେ,

Digitized by srujanika@gmail.com

ସେ ଏତେ କଷ୍ଟ କରି ନ ଥାନ୍ତେ, ଏତେ ଦୁଃଖୀଲୋକଙ୍କ ଚୋଟି ଶିଁପି ନ ଥାନ୍ତେ; କେଉଁ ପୁଅ ସମ୍ପତ୍ତି କମେଇଥିବା ବାପର ଦୁଃଖକଷ୍ଟ ବୁଝେ ?

ବନେଇ ପଣ୍ଡା ମଲା ପରେ ଭୋଳ ଭାବିଲା—ସେ ବହୁତ ବଡ଼ । ବଡ଼ ଲୋକ କଣ କାମ କରେ ? ସେ କେବଳ ମଉଜମଜଲିସ୍ କରି କାଳ କଟାଏ । ଭୋଳ କାନ୍ଧରେ ଚାଦରି ଗାମୁଛା ପକାଇ ନଗରେ ଅତର ମାରି ଘୂରିବୁଲିଲା । ତାର ଲମ୍ବାଚୌଡ଼ା ଚେହେରା, ନାଗା ପାହୁଲ ଦେଖି ଗର୍ଭିଣୀ ଗାଈ ବାଟ ଛାଡ଼ିଲା ।

ଭୋଳର ପୁଅ ହୁରୁଷିଆ । ଝଡ଼େଇ ହବା ଲାଗି ତା ବେଳକୁ ବେଶୀ ମାମଲତ ନ ଥିଲା । ଯାହା ଥିଲା, ଲୋକଙ୍କ ଆଖିରେ ବହୁତ, ସଇତାନୀ ବୁଦ୍ଧି ଖେଳେଇବା ଲାଗି ଢେର୍ ।

ସହର ବା ମଫସଲରେ ହାତରେ ବହୁତ ପଇସା ହେଲେ ଦାନଧର୍ମ ନ କଲେ ବା କିଛି କୀର୍ତ୍ତି କରିଯିବା ଲାଗି ଇଚ୍ଛା ନ ଥିଲେ, ମାଲିକ ମଦ, ମାଇକିନିଆଁରେ ସବୁ ଉଡ଼ାଇ ଦେଇପାରେ । ହୁରୁଷିଆର କେତେବେଳେ କେମିତି ଗଞ୍ଜେଇ ଚଳେ । କିନ୍ତୁ ନିଶା ଖାଇ ମାତାଲ ଅବସ୍ଥାକୁ ସେ କେବେ ଆସିନାହିଁ । ମାଇକିନିଆଙ୍କୁ ଘେନି ତାର ଖେଳ । ସଂସାରର ସବୁ ସୁଖ ସେଇଠି ଅଛି—ସେ ଭାବେ, କହେ—ଯେତେ ପାରୁଚ, ମାଇକିନିଆଙ୍କୁ ଲୁଟି କର । ସବୁ ରସ ନିଗାଡ଼ି ନେଲା ପରେ ସିଠାକୁ ଫିଙ୍ଗିଦିଅ ।

ଏଇଠା ସୁଗନ୍ଧରାଜ, ସେଇଠା ପୋକଶୁଙ୍ଘା—ସେ ବାଛବିଚାର କରେନାହିଁ । ଯୋଉ ମନ ସେ ଫୁଲ ତୋଳି ଆଣି ସେ ଶୁଙ୍ଘି ଫିଙ୍ଗି-ଦିଏ ।

ଯଥାକାଳେ ବିଭା ଦେଇଥିଲେ ବାପା । ସଂସାର କରି ସ୍ତ୍ରୀ ପୁରୁଷଙ୍କ ଭିତରେ କେଉଁଠି ଖଟ୍‌ଖାଟ୍ ଲାଗେ ନାହିଁ ? ବାକ୍ କଳହରେ କେଉଁଠି ସ୍ତ୍ରୀ ପାଦେ ଦି ପାଦ ଆଗେଇ ନ ଯାଏ ? ସେ କଥାକୁ ଧରି

Digitized by srujanika@gmail.com

ବସ୍ତିଲେ ପୁରୁଷ ମାରାତ୍ମକ ହୋଇଉଠେ; ଭୟଙ୍କର କାଣ୍ଡ ଘଟାଇ ବସେ । କଣ ପଦେ ହୁଡ଼ କହିଦେଲାରୁ ହୁରୁଷିଆର ଲୁହା ହାତ ପଡ଼ିଗଲା ତାଳଗଜା ପରି କଅଁଳ ମାଇପର ଡୋଟିରେ । ମୁହୂର୍ତ୍ତକ ମଧ୍ୟରେ କଥା ଶେଷ ।

ଘାଇ କୁଟୁମ୍ବଙ୍କୁ ହାତ କରି ବେଗରେ ମାଇପର ସ୍ୱାଭାବିକ ମୃତ୍ୟୁ ଘଟିଛି ବୋଲି ରଟେଇ ଦେଲା । କଥାଟା ଚପିଗଲା ।

ତା ଆଖିରୁ କମ୍ ଲୁହ ଝରୁ ନ ଥିଲା, କମ୍ କୋହ ଉଠୁ ନ ଥିଲା । ହାହାକାରରେ ମେଦିନୀ କମ୍ପାଉ ଥିଲା ସେ । ଏସବୁ ଲୋକଦେଖାଣ, ପ୍ରକୃତ ଘଟଣାକୁ ଚପେଇ ଦେବାର ଏକ ଫନ୍ଦି ।

ଖଣ୍ଡିଆଟାଏ; କଣ ବୋଲି କଣ କରିବ ! ଆମର କି ଦରକାର ? ଲୋକେ ସବୁ ଜାଣି ବି ଚୁପ୍ ରହିଲେ । ମଣିଷମାରୁ ବୋଲି ଗୋଟାଏ ଗୁଜବ୍ ଭିତରେ ଭିତରେ ରହିଲା । ତାକୁ ଆଉ କିଏ ଝିଅ ଦବ ?

ତାପରେ ତା ଆଖି ପଡ଼ିଲା ବାଉରିସାଇ ଉପରେ । ମଣିଆଁ ଭୋଇର ଭାରିଯା ହୁରୁଷିଆର ଗୁହାଳ ପୋଛେ । ଗୁହାଳ ପୋଛୁ ଫେରିବାକୁ ଏବେ ଡେରି ଡେରି ହେଲା, ଲଖୀର ବେଶଭୂଷଣ ବି ବଦଳିଲା । କୋଉ ଦିନ ଗୁଡ଼ାଏ ଚାଉଳ, ଡାଲି, କେବେ ପନିପରିବା ବା ଗୋଟିଏ କାଠ ଘେନି ଲଖୀ ଫେରେ । ଆଗେ ତ ନସି ଫିଟୁ ନ ଥିଲା, ଏବେ ଏତେ ଜିନିଷ ସାଆନ୍ତ ଦଉଛି କାହିଁକି ? ପଶପୂର ଧୂଆଁ କୁହୁଳି ବୁଲୁଥିଲା । ଦିନେ ହୁଗୁ ହୁଗୁ ହୋଇ ନିଆଁ ଜଳି ଉଠିଲା ।

ସାଇ ସଭା ବସି ମଣିଆଁକୁ ଧମକ୍ ଦେଲା—ମାଇପକୁ ଅକତିଆରରେ ରଖିବୁ ତ ରଖ, ନହିଲେ ଦେଖିବୁ । ନିଆଁ ପାଣି ବନ୍ଦ ହେବ । ଆମ କଥା ନ ମାନି କୋଉ ସାଆନ୍ତ ଯଦି ତତେ କାମ କରାନ୍ତି, ତା କାମ କରିବାକୁ ଆମେ ଆଉ କେହି ଯିବୁ ନାହିଁ ।

Digitized by srujanika@gmail.com

ଫଣ୍ଡା ଦୁଆର ବନ୍ଦ ହେଲା । ଜାଲ ଗୋଟେଇବା ଆଳରେ ଯାଇ ଲଖୀ ହୁରୁଷିଆକୁ ଭେଟି ଆସେ । ସେ କଥା ଲୁଚିଲା ନାଇଁ ।

ଏଥର ବଡ଼ ଜାତିଆଣ ସଭା ବସିଲା । ହୁରୁଷିଆକୁ ଦି ଚାରିଜଣ ଯୋଇ ଯାଇ ଧରି ଆଣି ଗୋଟେ ଗଛରେ ବାନ୍ଧି ପକାଇଲେ । ବଡ଼ ବେହେରା ସବୁ କଥା ଶୁଣି ରାୟ ଦେଲେ—ମଣିଆଁ ର ମାଇପ ହୋଇ ରହିବ, ହୁରୁଷିଆ ଯୋଗ କରିବ—ଏ ଦୋମୁହାଁ । ମାଡ ଚଳିବ ନାଇଁ । ଲଖୀକି ହୁରୁଷିଆ ଦୁଖାପୁ ହବ, ମଣିଆଁ ଆଉ ଥରେ ଭାରି ହବ ।

ଜାତି ଯିବ, ସାଇଭାଇ, ବନ୍ଧୁକୁଟୁମ୍ବ ହରାଇବାକୁ ପଡ଼ିବ, ସବୁ ଜାଣି ବି ହୁରୁଷିଆ ରାଜି ହେଲା; ବନ୍ଧନରୁ ମୁକୁଳିଲା । ଏକଘରିକିଆ ହୋଇ ସେ ଚଳିଲା । ଠେଙ୍ଗା ତାର ଏକମାତ୍ର ଭାଇ । ଠେଙ୍ଗାଟି ଧରି ସେ ରାତି ଚଉପହର ବୁଲେ, ସମସ୍ତେ ଦେଖନ୍ତି, ନିଜ ମାନ ଜଗି ଭୟେ ଭୟେ ଆଡ଼େଇଯାନ୍ତି । 'ଯେଝା କର୍ମର ଫଳ ସେ ଭୋଗ କରିବ, ଏ ଗହନ ଲଟା ଭିତରେ ଆମର ପଶିବା କି ଦରକାର ?'

ଲଖୀ ଆଜି ହୁରୁଷିଆର ଗୋଟେ ଝିଅ ହେଲା । ସେ ବଡ଼ ହେଲା ପରେ ଜଣେ ଦୋଡ଼ବେହା ବାହ୍ମଣକୁ ଝିଅଟି ବନ୍ଧୀ କରିଦେଲା । ଏମିତି ବନ୍ଧୀବଟା ତ କେତେ ଚାଲେ । ଜାତିଗୋତ୍ର ଧରିବସେ କିଏ ? 'ଆତୁରେ ନିୟମୋ ନାସ୍ତି' ।

ସେତେବେଳକୁ ଲଖୀ ବୁଢ଼ୀ । ହୁରୁଷିଆ ଗୋଟେ ଜବାନ୍ ଝିଅ ସଙ୍ଗେ ଭାବ ଜମେଇଲାରୁ ଲଖୀ ମୁହଁ ଫୁଲେଇଲା ।

ହୁରୁଷିଆ ଗରଜି ଉଠିଲା—ମୁଁ ଯାହା କଲି ତ ତୋର କଣ ଅଛି ? ଚୋଟ ଲୋକ, ମୁହଁ ଦେଲାରୁ ମୁହଁ ବଢ଼ିଯାଇ କୋଉଠି ହେଲାଣି । ପାଖରେ ଶୋଇଲୁ ବୋଲି ଭାବୁଚୁ—ସତେ ମୋ ମାଇପ ହୋଇଗଲୁ ବୋଲି କି ? ମୋ ପାଖରେ ତ ଏମିତି କେତେ ଶୁଅନ୍ତି, ସମସ୍ତେ କଣ ମୋ ମାଇପ ? ଖାଇ ପିଇ ଚୁପ୍ ହୋଇ ରହ; ନଇଲେ ଫେର୍ ଦେଖିବୁ !

Digitized by srujanika@gmail.com

ଏମିତି କଥା କଟାକଟିରେ ହୁରୁଷିଆର ଷଣ୍ଢ ଆସି ହାତ ପଡ଼ିଲା ଲଖୀର ତୋଟିରେ । କାହାର ଇତାଲାରେ କେଜାଣି ଲଖୀର ଲାସ୍‌କୁ ଜବତ୍ କଲା ପୁଲିସ୍ । ହୁରୁଷିଆ ଦି ମାଣ ଜମି ବିକି ପୁଲିସ୍‌ର ମନ ବୋଧ କରିଦେଲା । ଲାସ୍ ଜବତ୍ କଲା ବେଳର ତେଜ, ଧଡ଼କ ଧମକ ସବୁ ପାଣି ଫାଟିଗଲା । କେତେ ଦିନ ଥାନା ହାଜତରେ ରହି ହୁରୁଷିଆ ଫେରିଲା ।

ତାପରେ ଯାହା ସାଙ୍ଗେ ଭାବ ହେଲା, ସେ ବୁନା ଖେଲିଇର ମାଇପ । ବୁନା ରୋଗରେ କଡସଲଗା ହୋଇ ପଡ଼ିଛି । ବାଉରିଙ୍କ ସହଜରେ ରୋଗ ଧରେ ନାହିଁ । ଥରେ ଧରିଲେ ଝୁଣୁକା ଝୁଣୁକରେ ଭଲ ନ ହେଲେ ସେ ମରେ । ତାକୁ ଡାକ୍ତରଖାନାକୁ ନିଏ କିଏ ? ହୁରୁଷିଆ ଶଗଡ଼ ଗାଡ଼ି ସଜାଲି କରି ଦୁଆରେ ହାଜର ହେଲାରୁ ଲୋକେ ଆଶ୍ଚର୍ଯ୍ୟ ହେଲେ—ଏଡ଼େ ଖେଚେଡ଼ାର ଏତେ ଭଲ ବୁଦ୍ଧି ତ କେବେ ଦେଖାଯାଇ ନାଇଁ; କଥା କଣ ?

ହୁରୁଷିଆର ଯେ ଯତ୍ନ ଭିତରେ ଗୋଟାଏ ମତଲବ୍ ଅଛି, ଲୋକେ ଠିକ୍ ସନ୍ଦେହ କରୁଥିଲେ । ହୁରୁଷିଆ ବୁନାକୁ ନେଇ ରାତି ଅଧରେ ଗୋଟେ ଅପନ୍ତରା ଗହିର ଖାତରେ ପକାଇ ଦେଲା । ସକାଳ ଯାଏ କାଲେ ଖାଇବ, କଥାଟା ପ୍ରଘଟ କରିବ, ନିଶ୍ୱାସ ଯାଆସ କରିବା ଦେଖି ହୁରୁଷିଆ ବୁନା ତୋଟିରେ ଠିଆ ହୋଇଗଲା ।

ଦି ଦିନ ପରେ ଗାଁକୁ ଫେରି ହୁରୁଷିଆ କହିଲା—ବୁନାଟାକୁ ନେଇ ମଣିଷ ବଡ଼ ହଲପଟାରେ ପଡ଼ିଲା । ଗୁଡ଼ାଏ ପଇସା ଖର୍ଚ୍ଚ ହେଲା । ହେଲେ ଯଣ ରହିଲା ନାହିଁ । ରୋଗ କୌଣସି ଔଷଧର ବୋଲ ମାନିଲା ନାହିଁ । ବୁନା ମରିଗଲା । ତା ଶବ ସତ୍‌କାର କରାଇ ଫେରିଲି । ଯେତେ ହେଲେ ଗାଁ ଲୋକଟାଏ ! ତାକୁ କଣ ଆଉ ବିଲୁଆ କୁକୁର ମୁହଁରେ ଦେଇଥାନ୍ତି ?

Digitized by srujanika@gmail.com

ତାପରେ ହୁରୁଷିଆ ଘରକୁ ବୁନା ଘରଯା ଝୁମ୍ମୀର ଫିମ୍ବା-ଆସିବା ବଢ଼ିଲା, ସେଇ ଗୁହାଳପୋଗ୍ଗ ଆଳରେ । କେତେ କାଳ ପରେ ଝୁମ୍ମୀର ଗୋଟିଏ ଝିଅ ହେଲା । କାଲେ ସକାଳୁ ହୋ-ହଲ୍ଲା ହବ, ହୁରୁଷିଆ ରାତାରାତ୍ ତାକୁ ଖତମ୍ କରି ପୋଖରୀ ମଝିରେ ମାଡ଼ିଦେଲା । ସକାଳୁ ଛୁଆଟା ଭସି ଉଠିଲା । ହୋ-ହୋ ଭିତରେ ଚଉକିଆ ଧାଇଁ ଯାଇ ଥାନାରେ ଇତାଲା କଲା । ଦାରୋଗା ଗାଁକୁ ଆସି କେତେ ପଚରା-ଉଚରା କଲା । ହେଲେ କିଛି ପତ୍ତା ପାଇଲା ନାହିଁ । ଶେଷକୁ ଗର୍ଜନ କରି ଧମକ୍ ଦେଲା—ମୋ ଆଖିରୁ ପାପ ଲୁଚାଇ ରଖି ପାରିବ ନାହିଁ । ଡାକ୍ତରାଣୀ, ନର୍ସ ଡକାଇ ଘରେ ଘରେ ପରଖିବ । ଦେଖିବା ଦେଖି, କେମିତି ଅସଲ ଦୋଷୀ ଧରା ନ ପଡ଼ିବ ! ଛୁଆଟା ନିଶ୍ଚେ ଏଇ ଗାଁର, କୁଆଡ଼ୁ ଉଡ଼ି ଆସି ଏଠି ପଡ଼ିନି ।

ଏ କଡ଼ା ଧମକ ଶୁଣି ମହିମା ଗୋସେଇଁଙ୍କ ଭକତ ସଦେଇ କହିଲା—ଆପଣ କାହିଁକି ମିଛରେ ଗୋଟା ଗାଁକୁ ହଲପଟାରେ ପକାଇବେ ? ଏଥିରେ ଆମର ଇଜ୍ଜତ ମହତ ଯିବ ନା ନାହିଁ ? ଜଣେ କରିବ ପାପ, ସମସ୍ତେ ଭୋଗିବେ ଶାସ୍ତି !

ଏଥିରେ ଦାରୋଗା ଆଖି ଲାଲ୍ କରି କହିଲା—ଆରେ ହେ ବା'ଙ୍ଗା, କେତେ ବାହାଦୁରୀ ଦେଖେଇ ହଉଚୁ ? କାହାରି ତ ପାଟି ଫିଟୁନି, ତୁ ଯଦି ଏଡ଼େ କାଢ଼ୁଆ, କହୁନୁ, କିଏ ସେ ଦୋଷୀ ?

ସଦେଇ କହିଲା—କଣ ଫସାଦ ମାଡ଼ିଯାଉଚି ? ଆମେ ତ ଢ଼ ପରାଣିଆ । ବାନ୍ଧ୍ କରିବା ଚଲ୍ । ଏଇଲେ ବୋଇଲେ ଏଇଲେ ଉଠିଲୁ, ଗ୍ଗଲଲୁ ।

'ଚୁପ୍, ଚୁପ୍ ; ବାରଗୁଉଳଆ କଥା ଜୁଦେଁ, ଗୋକ୍ଠୋକ୍ କିଛି କହିବୁ ତ କହ । ନଇଲେ ଥାନାକୁ ଧରିନେବି । ଦି ଗୁଟି ପାହାର କଷି ଦେଲେ ସବୁ ଖୁଲ୍ଖାଲ୍ ବାହାରି ପଡ଼ିବ ।'

ଟିକିଏ ମାତ୍ର ଉତ୍ତେଜିତ ନ ହୋଇ ସଦେଇ କହିଲା—'ଥାନା ବା ଲାଲ୍ ଆଖିକି ମୋର ଡର ନାହିଁ । ଅଳ୍ପଦିନ ପରେ ତ ପ୍ରଳୟ

Digitized by srujanika@gmail.com

ସମୁଦ୍ର ମାଡ଼ ଆସିବ; ସେଥିରେ ତ ପୁଲସ୍ ଥାନା ବ ଗୋଟେ କାଗଜ ଡଙ୍ଗା ପରି ଭାସିବ !’

‘ଆରେ ହେ ଜଟିଆ ବା’ଜା, ମିଛୁକୁ କେତେ ଫବେଇ ହଉଚୁ ?’

‘ତମେ କଣ ସତରେ ଜାଣ ନାଇଁ, ଏଡ଼େ ଅପକର୍ମ ଏ ଗାଁରେ କଏ କରଚ ବୋଲି ?

କେତେ ତମ୍ଭିତୋଫାନ୍ ଦେଖେଇ ତ ବାନ୍ଧିନଅ, ଫେର୍ ସବୁ କାଲୁଆ ପଡ଼ଯାଏ କାହିଁକି ?’

‘ଆରେ ହେ, ମୁଁ ବାଆଜା ଫାଆଜ କଛୁ ମାନେ ନାଇଁ; ସିଧା ସଲଖ ମାମୁଁଘର ଦେଖେଇ ଦେବ ।’

‘ମାମୁଁଘର, କଣ ଯମପୁରକୁ ବ ମୋର ଭୟ ନାଇଁ, ହେଇ ପ୍ରଳୟ ତ ଆସିଲା ଜାଣ !’

‘ଆରେ ଏଇଟା ଭଡ଼ଙ୍ଗିଆଟାଏ ରେ ! କରେ କହୁନୁ ?’

‘ଜାଣି ସିଆଣା ତମେ, ଗ୍ରେପର୍ ହଉଚ । ଆମ ଗାଁରୁ ତିନ ଥର ପାଞ୍ଚ ଥର କାହା ନାଆଁରେ ଇତାଲ୍ ହେଇଚ ? ଏଡ଼େ ମାର୍କାମର୍ ଆଉ କଏ ଅଛି ?

ପୁଲସ୍ ବଳ ନ ପାଇଥିଲେ କଣ ଆମ ଏ ହୁରୁଷିଆଟା ଏତେ ଖରାପ୍ ହେଇଥାନ୍ତା ? ଗ୍ବେର, ଉକେଇତ ବଢ଼ନ୍ତି ଏଇ ପୁଲସ୍ ହେପାଜତରେ !’

ହୁରୁଷିଆ ଦାନ୍ତ କଡ଼ମଡ଼ କରୁଥାଏ । ସତେ ଯେମିତି କାମୁଡ଼ି ସଦେଇର କଲିଜାଟା ଓଟାରି ଆଣିବ !

ଦାରୋଗା ବଗି ନଆଁବାଣ ହେଲେ ବ କଛୁ ନ କହି ହୁରୁଷିଆକୁ ହାତକଡ଼ା ପକାଇଲା । ମଲ୍ଲ ପିଲାଟାକୁ ତାଡ଼ଆରେ ରଖି ଝୁଣ୍ଟିକି କହିଲା—ଏଥିକୁ ମୁଣ୍ଡେଇ ଚାଲ୍ ଥାନାକୁ ।

Digitized by srujanika@gmail.com

ଆଉ ଥର ପରେ ଏଥର ବି ହୃରୁଷିଆ ପୁଣି ଦି ମାଣ ଜମି ହାତରୁ ଖସେଇଲା, ପୁଲସ୍ ଏମିତି ଢଙ୍ଗରେ ଗୁର୍ଜସିଟ୍ ଦେଲା ଯେ ସାପ ମରିବ ନାହିଁ କି ବାଡ଼ି ଭାଙ୍ଗିବ ନାହିଁ । କେତେ ଦିନ ପରେ ହୃରୁଷିଆ ନିର୍ଦ୍ଦୋ-ଷରେ ଖଲାସ୍ ହୋଇଆସିଲା ।

ଏମିତି ହୃରୁଷି ତା ଅମଳ ମାରି ଆସିଲାଣି । ଏବେ ନିର୍ଧୁମ ବୁଢ଼ା । ପଚାରିଲି—ହୃରୁଷି ବାବୁ, କେମିତି ଅଛ ? 'ଯେମିତି ଥିଲି ସେମିତି ଅଛି । ମୋ ପିଛୁ କେତେ ଲାଗିଲେ । କୋଉ ସ୍ତ୍ରୀର ଭାଇ ମୋର କଣ କରି ପକେଇଲା ? ବୁଦ୍ଧି ଥିଲେ ବାପ ଘରେ ପୁଅ, ପଇସା ଥିଲେ ଯା ଇଛା ତା କରି ପାରିବ । କୋଉ ଶଶୁର ପୁଅକୁ ମୁଁ ଦି ପଇସାରେ ଖାତିର କରିନାହିଁ !'

ସମୁଦ୍ର ଆମ ପାଖେ ନ ଥିଲା କେତେ ବାଟ ଆଗେଇ ଯାଇ-ଥିଲେ । ମୁଁ ଧାଇଁଯାଇ ମିଶିବା ପରେ କହିଲେ—ସେ ଅମଣିଷଟା ସାଂଗେ କି କଥାଭାଷା ?

"ଗାଁରେ ଘର କଲେ ବହୁତ ମିଛ, ପାପ ସାଂଗେ ସାଲସ୍ କରି ଚଳିବାକୁ ହୁଏ । ବୟ୍କଟ୍ କଲେ କେତେ କରିବ ? ବାକି ରହିବେ କେତେ ? ତା ଭିତରୁ ମଣିଷ ଭାବେ ଗଣିତା ହୁଅନ୍ତି କେତେ ? ତାଙ୍କୁ ନେଇ ଯୋଉ ଗାଁ ହବ, ସେ କି ଗାଁ ? ଦୁଷ୍ଟ ଶିଷ୍ଟଙ୍କୁ ନେଇ ଗୋଳିଆ ମିଶା ହୋଇ ଆମେ ଚଳୁ ।"

ଏତିକି ବେଳେ ବଡ଼ ଜମି ମାଲିକଙ୍କର ଗୋଟାଏ ଟ୍ରାକ୍ଟର ମାଡ଼ି ଆସିଲା । ଏବେ ଗାହାରର ଚେହେରା ବଦଳି ଯାଇଛି । ଆଗେ ଯୋଉଠି ଟାଇଁ ଟାଇଁଆ ଖରା ନାଚୁଥିଲା, ଏବେ ସେଠି ସବୁଜ ଲହଡ଼ି ଖେଳୁଛି ।

ସନ୍ତୁ—ଆମ ଆଡ଼େ ନାଳ ପାଣି ନାହିଁ । ଖରାଦିନେ ପାହାଡ଼ରେ ଦାଉଡ଼ି ଜଳେ, ଯୁଆଡ଼େ ଦେଖିବ ସିଆଡ଼େ । ନିଆଁ ପବନ ଝାସରେ ଆମ ବାଡ଼ି ଗଛବୁରୁଛ ବି ଝାଉଁଳି ଯାଏ ।

Digitized by srujanika@gmail.com

ଆମ ଆଡ଼େ ଏକଫସଲି ଜମି, ମରୁଡ଼ି ମରେ, ଦୁଃଖ ଏଇ ।

ମିଛୁ—ତମ ଆଡ଼ ଲୋକେ କେମିତି ?

ସତ୍ତୁ—ତମ ଗାଁରେ ଯାହା ଦେଖିଲ ଶୁଣିଲ, ଆମ ଲୋକେ ତାକୁ ସ୍ୱପ୍ନ ବୋଲି କହିବେ ।

ଆମ ଆଡ଼ ଲୋକ ସରଳ, ନିରୀହ । ଢେଙ୍କାନାଳ ସହରରେ ଏବେ ଏମିତି ଜଣେ ଅଧେ ବାହାରିଲେଣି । ସଂସର୍ଗ ଦୋଷ ।

ମିଛୁ—ଗପି ଗପି ପାଟିରୁ ବଳ ବାହାରିଲାଣି । ଗୋଡ଼ ବି ଢୋଲା କଲାଣି । ଆଜି ଏତିକି ଥାଉ ।

ଦି ସମୁଦି ଫେରିଲା ବେଳେ ବାଟରେ ପୋଖରୀ ତୁଠରୁ ତରଗର ଆଳାପ ଶୁଣିଲେ—

ଯୁବତୀ—ଅରୁଆ ଚାଉଳ ଖିରୀକି  
ତମ ବାଇଜର ମୁହେଁରେ କାଳିଆ  
କେତେ ଚାହୁଁ ଥାଉ ନରେଖି ?  
ଗଡ଼ିଆ ତୁଠରେ କଂସା ମାଜୁଚି ମୁଁ  
ଲେଉଟି ନ ଚାହାଁ ମତେରେ  
ମୋର ଗୁଣମଣି ତୋ ଠଉଁ ସୁନ୍ଦର  
ଗୋଲାମ ରଖିବ ତତେ ରେ !

ଯୁବକ—ଛୁଲେ ଛୁକୁଣି ତୋ ମୁଣ୍ଡେ ଉକୁଣି  
ତୋତେ କିଏ ମୋର ଚାହୁଁଚି ?  
ମୋ'ର ଘରଣୀ ତୋ ଠଉଁ ସୁନ୍ଦର  
ଶାଶୁ କୋଳେ ଦନ ନଉଚି !

Digitized by srujanika@gmail.com

## ॥ ଆଠ ॥

ଫର ହଜ ହ ସମୁଦ୍ର ଗାଁ । ବୁଲିଗଲା ବେଳେ ଯୋଗୀ ଗୀତଟିଏ କାନରେ ବାଜିଲା, ଧୁଡ଼ୁକର ତାଳେ ତାଳେ—

"ଗଛକୁ ସୁନ୍ଦର ହଶେ ଫଳ ଫଳିଲେ
ଫଳ ଫଳିଲେ କି ହବ ?
ଫର ଆତ୍ମା ନ ଖାଇଲେ ।
ଦେଉଳକୁ ଶୋଭା ହଶେ ଧ୍ୱଜା ବାନ୍ଧିଲେ
ଧ୍ୱଜା ବାନ୍ଧିଲେ କି ହବ ?
ଦେଉଳେ ହଅଁ ନ ଥିଲେ ।
ହରି ନାମ ନ ଧଇଲେ
କୃଷ୍ଣ ନାମ ନ ଧଇଲେ
କି ହବ ଶୁଆ ପୋଷିଲେ ?"

ମିଚ୍ଛୁ—ସେମିତି ଏ ଲୋକଟି ବହୁତ ଧନ କମେଇଲା । କାହାର କି ସ୍ୱାର୍ଥରେ ଲାଗିଲା ?

ସତ୍ତୁ—ଶ୍ରେଷ୍ଠ ହଉ, ବଡ଼ ହଉ, ମଣିଷ ନିଜ କଥା ଭାବେ, ଅନ୍ୟ କଥା ଭାବୁଥିଲେ ତ ସତ୍ୟଯୁଗ ଫେରି ଆସନ୍ତା । ବଡ଼ ଲୋକ ତାଙ୍କ ଧନରୁ କାଣିଚାଏ ଖର୍ଚ୍ଚ କରିଦେଲେ ଭୋକ ଉପାସରେ ଏତେ ମଣିଷ ମରନ୍ତେ ନାହିଁ । ପୃଥିବୀ ସୁନା ପାଲଟିଯାନ୍ତା ।

ତୁମେ ଏ କାହା କଥା କହୁଚ ?

Digitized by srujanika@gmail.com

ମିଛୁ—ପଥର ପିଣ୍ଡା ଉପରେ ଏ ଯୋଡ଼ ମେଞ୍ଚାଏ ହେଇ ବସିଛ, ବୁଢ଼ା ବାହ୍ମଣ, ସେଇ ଜାନ୍ତର ବୁଢ଼ା ବେଙ୍ଗଟାଏ ପରି, ତାକୁ ଏବେ ଏମିତି ଦେଖୁଚ କି ସମୁଦ୍ର ? ଦିନେ ସେ ଏ ଗାଁକୁ ପକଉଥିଲା, ଉଠଉଥିଲା ।

ସେ କାହାକୁ ନିଜ ବାଟରେ ଯିବାକୁ ଦଉ ନ ଥିଲା । ତା ହଁ-ନାଁ ଗାଁରେ ହଁ-ନାଁ ହେଇ ଚାଲୁଥିଲା । ଏବେ କେମିତି ମୁରୁଜ ମାନ୍ ହେଇ ବସିଚ, ଦେଖୁଚ ? ଗୋଟାଏ ମଲା କଙ୍କଡ଼ା ଓଲଟାଇବା ଲାଗି ତା ହାତରେ ଜୁ ନାଇଁ ।

ସତ୍ତୁ---ଯେମିତି ବର୍ଷାଦିନର ଉଚ୍ଛୁଳା ନଈ ଖରାଦିନେ ମଲା ସାପ ପରି ପଡ଼େ, ମଣିଷ ସେମିତି ଦି ଦିନ ଉଚ୍ଛୁଳେ, ଉଠୁରେ, ଯେମିତି ଆମ ରଜା ।

ମିଛୁ—ଏ ଦୁର୍ଯୋଧନ ଖାଲି ନାଁକୁ । ଦୁର୍ଯୋଧନ ଚାଲିଗଲେ ସୁନା ପଦ୍ମ ଫୁଟୁଥିଲା । ଆମର ଏ କଟାଣ ମହାବଳ ଚାଲିଗଲେ ଛତୁଟାଏ ବି ଫୁଟେନାଇଁ ! ଏ ନୁଣୁଛଣା ପାଦ ବାଜିଲେ ବରଂ ଘାସ ଝାଉଁଳି ଯାଏ ।

ଦୁର୍ଯୋଧନ ଥିଲା ଭାରି ମାନୀ । ମାନଗୋବିନ୍ଦ ସେ । ଆମ ମକଦ୍ଦମଙ୍କର ମାନଅଭିମାନ ଠିକେ ହେଲେ ନାଇଁ । ପଇସା ଲୋଭରେ ସେ ଯେତେ ଇଚ୍ଛା ସେତେ ତଳକୁ ଖସିଯାଏ । ପଇସା ପାଇବାକୁ ଥିଲେ ସେ ମୁଣ୍ଡ ପାତି ସବୁ ମାନଅପମାନ ସହିଯାଏ ।

ସେ ପଞ୍ଚପାଣ୍ଡବଙ୍କୁ ପାଞ୍ଚଖଣ୍ଡ ଗାଁ ତ ଦୂରର କଥା, ଛୁଞ୍ଚି ମୁନରେ ମୁନେ ଜାଗା ଦବା ଲାଗି ବି ଗର୍‌ରାଜି ଥିଲା । ଆମର ଏ ହିରଯା କାହା ଦଖଲରେ ଛୁଞ୍ଚି ମୁନେ ଜାଗା ରଖିଦେଇ ନାଇଁ । କଲେ ବଲେ କୌଶଳେ ଅନ୍ୟ ହାତରୁ ଜମି ବାଡ଼ି ଡିହ ଖସେଇ ଆଣିବା ତାର କାମ ।

ହିରଯା ଗୋଟାଏ ଧୂଳିଆ ରଜା । ମୁଣ୍ଡରେ ପାନିଆଁ ବୁଲେ ନାଇଁ । ନୁଖୁରା ହାତରେ ଦୁଧୁଖଡ଼ି ବୁଲାଇଦେଲେ ଗାର କାଟି ହୋଇ-

Digitized by srujanika@gmail.com

ଯିବ । ସତରେ ଏ ଅନାଡ଼ ମୁକୁଟ ବା ଜରି ପୋଷାକ ପିନ୍ଧିଲେ ଦୁଆରି ପରି ଦିଶନ୍ତା ।

ଦୁର୍ଯ୍ୟୋଧନର ହିଂସା ଗୁଣଟି ତାର ପୂର୍ଣ୍ଣମାତ୍ରାରେ ଅଛି । କିଏ ସୁଖ ବା ଶାନ୍ତିରେ ଚଳିବା ଦେଖିଲେ ତା ଛାତି କରତି ହେଇଯାଏ । ସୂତରେ ଆଖିରୁ କଜ୍ଜଳ କାଢ଼ିନେବା ଶକ୍ତି ସେ ହାସଲ କରିଚି । କେତେ ରାଣ୍ଡୀଖଣ୍ଡୀଙ୍କ ସେ ବଡ଼ ଦାଣ୍ଡରେ ବସେଇଚି, ତାର ଇୟତ୍ତା ନାହିଁ ।

ଗୋବର ଯେମିତି ମେଞ୍ଚାଏ ମାଟି ସଙ୍ଗରେ ଯେନି ଉଠେ, ସେମିତି ତା କରଜ, ଡିହବାଡ଼ି, ଜମି ସବୁ ଟାଣି ଆଣେ ।

ତା ମନକୁ ଗୃହିଁ ସବୁ ମିଳିଛି, କେବଳ ମିଳିନାହିଁ ସୁଖ ଶାନ୍ତି ବା ସନ୍ତୋଷ । ସତରେ ଧନରୁ ଯଦି ସେ ସବୁ ମିଳୁଥାନ୍ତା, ଧନୀ ହୋଇ-ଥାନ୍ତା ପୃଥିବୀର ସବୁଠାରୁ ସୁଖୀ ।

ଗରିବ, ମଧ୍ୟବିତ୍ତ ବରଂ ତା ଚାଏ, ଧନୀ ପାଏ ନାହିଁ । ଶଙ୍କା ତା ମନରେ ଯୋଟି ରହିଥାଏ—କାଳେ ବହୁ ଦୁଃଖରେ ଅର୍ଜିତ ସମ୍ପତ୍ତି ତାକୁ ବୋହିନେବେ କମ୍ବା ନିଆଁ ପୋଡ଼ି ଜାଳିଦବ ! କାଳେ ଗୋଟେ ଅଚିହ୍ନା ବ୍ୟାଧି ଗ୍ରାସ କରିବ, ହଠାତ୍ ଚଡ଼କ ପଡ଼ିବ କି ସାପ ହାଣିଦବ ! କମ୍ବା ଅକାଳ ମୃତ୍ୟୁ ଯୋଗୁଁ ସବୁ ସମ୍ପତ୍ତି ଭଗାରିଙ୍କ ହାତରେ ପଡ଼ିବ କି ଭୂତ ଖାଇଯିବେ, ଯେମିତି ଅନେକ କ୍ଷେତ୍ରରେ ଘଟୁଛି ।

ସମସ୍ତଙ୍କ ଉପରେ ତାର ସନ୍ଦେହ, ଯେମିତି ଦୁର୍ଯ୍ୟୋଧନର ଥିଲା । ଶତ୍ରୁ ନିପାତ ଲାଗି କେତେ କେତେ ବଳବନ୍ତଙ୍କୁ ହାତ କଲା, କେତେ କେତେ ଚକ୍ରାନ୍ତ କଲା । ସବୁ ଚକ୍ରଧାରୀଙ୍କ ମାୟାରେ ପାଣି ଫାଟିଗଲା ।

ଭୀମ ଗଦା ମାଡ଼ରେ ତା ଅଂଶବଅଂଶ ନିପାତ କଲା । ଭୟରେ ପଳାଇ ଯାଇ ବ୍ୟାସ ସରୋବରରେ ଆଶ୍ରା ନେଲା, ଭୀମର କାଳରଡ଼ି ସହି ନ ପାରି ସେ ପୁଣି ଆସି ରଣକ୍ଷେତ୍ରରେ ଛିଡ଼ା ହେଲା । ସେତେ-ବେଳକୁ ରକ୍ତନଦୀ ବୋହୁଥାଏ ।

Digitized by srujanika@gmail.com

ଦୁର୍ବାସା ମିଲାବେଳେ ଦେହରେ ହାତ ବୁଲାଇ ତାଙ୍କୁ ବଜ୍ରାଙ୍ଗ କରିଥିଲେ, କେବଳ ଜଙ୍ଘଟି ଛଡ଼ା । ଭୀମ ଯେତେ ଗଦା ପିଟିଲା, କିଆଁ ବାହାର ପଡ଼ିଲା ସିନା, ଦୁର୍ଯ୍ୟୋଧନର ବାଳ ବଙ୍କା ହେଲା ନାହିଁ ।

ପାଣ୍ଡବସଖା କୃଷ୍ଣ ସର୍ବଜ୍ଞ; ତାଙ୍କୁ ଏ ଦୁର୍ବଳତା ଜଣା । ସେ ଠାରି ଦେଲେ । ଭୀମର ଗଦା ମାଡ଼ରେ ଜାନୁ ଦିଖଣ୍ଡ ହୋଇଗଲା ।

ସେମିତି ଆମ ଦରପାର ଜାନୁ ଭାଙ୍ଗିଚି ମୁଁ ।

ସତ୍ତୁ—ତୁମ ଠାଙ୍କ ଲଞ୍ଚରୁ ଦିଶୁଚି ଏକା !

ମିଛୁ—କେତେ ସତ କଥାକୁ ତ ଲୋକେ ଏମିତି ହସି ଉଡ଼ାଇ ଦିଅନ୍ତି ।

ସତ୍ତୁ—କଣ ସତରେ ଗଦା ଧରିଥିଲ ନା, ଗୁଆବରଡ଼ା, ନଡ଼ିଆ ଫୋପଡ଼ା ?

ମିଛୁ—କଥାକୁ କହୁଚ ନା ! କାଠର ମୁଦ୍‌ଗରଟାଏ ତ ଟେକି ପାରିବ ନାହିଁ, ଆଉ ବାଆନ କ୍ ବାଷଠି ଭାର ଲୁହାର ଗଦା !

ଏ ଗାଁ ମାମଲତ କଥା । ମାମଲତରେ ହିଁ ଆମେ ତାଙ୍କୁ ଚିତ୍ କରି ଦେଇଛୁ ।

ସତ୍ତୁ—ତୁମ ରଜାଙ୍କର ତ ପାତ୍ରମନ୍ତ୍ରୀ, ସୈନ୍ୟସାମନ୍ତ, ପାଇକ କଟୁଆଳ ଥିବେ !

ମିଛୁ—ସେ ସବୁ କିଛି ନାହିଁ । ଖୋସାମଦିଆ କେତୁଟା ଅଛନ୍ତି, କାନକୁହା, ଠାଉଟର—ଯେ ରଜା ସାହାଯ୍ୟରେ ଶତ୍ରୁ ସାଧନ୍ତି, ଯାହାକୁ ପାନେ ଦବା ଇଚ୍ଛା, ଦିଅନ୍ତି । ଅମାନିଆଙ୍କୁ ମନାନ୍ତି ।

କିଆଗୋହିରର ବଲୁଆଟାଏ ସେ, ଗୁଈଁଚଭୁର, ଗୋଡ଼ାରେ ଜଗି ଖେଦେ, ଛଅାଣ ପର ଝାମ୍ପେ, ଭାରି ସୁନ୍ଦରୀ, ଭାରି ଯନ୍ତ୍ରୀ ।

ତୁମ ରଜାଙ୍କ ପରି ସେ ସୁନା ଥାଳିରେ ଭାତ ଖାଏ ନାହିଁ । ତାଙ୍କୁ କେହି ଗ୍ରାମୁଁ, ମଣିମା ଡାକନ୍ତି ନାହିଁ ।

Digitized by srujanika@gmail.com

ରଜାର ଗୋଟେ ଆଡ଼ମ୍ବର ଗୃହ ଅଛି, ଠାଣିମାଣି ଅଛି, ପୋଷାକପତ୍ର କ ଥାଟ ପଟୁଆର ଅଛି । ଆମ ରଜାଟା କାଡଛଡ଼ା, ସବୁ ଥାଇ କାଙ୍ଗାଳ ପରି ଚଳେ; କିଛି ନ ଥାଇ ଯେମିତି ଗାଉଁଲିଆ ଚଳନ୍ତି । ପାଳଭୂତ ପରି ଦିଶେ ସେ । ଲୋକେ ପିନ୍ଧନ୍ତି କୋଚଟ, ସେ ପିନ୍ଧେ ଅଖାଟେ ।

ଗଗରଷା ହେଲେ ଏ ଧୂଳିଆ ରଜାର ଆଖିରୁ ମୁଗଟ ବାହାରେ । ତା ଧମକ କେବେ ବୃଥା ହୁଏନାହିଁ । ଶକ୍ତ ଶିଙ୍ଘି ବୁଢ଼ା ଦେଇ ଆକେତା ହେଲେ ଯାଇ ସେ ଛୁଡ଼େ ।

ସତୁ—ଏମିତି ହେଟା ବାଘକୁ ଠେଙ୍ଗା ପାହାର ଡେର୍ । ଆମ ଜଙ୍ଗଲି ରାଜ୍ୟରେ ଡର ମହାବଳକୁ । ମାରି ଖାଇଦେଲେ ତ କଥା ଛୁଡ଼େ । ସେ ତା କରେ ନାହିଁ । ସେ କଣ୍ଟାଝୁଣ୍ଟାରେ ଘୋଷାରି ନଏ । ତା ଘୋଷରା ବେଶୀ ବାଧେ, ପ୍ରାଣ ଯାଇ ଯାଇ ନ ଥାଏ ।

ଭାଲୁ—ବ ବଡ଼ ଅବିଶ୍ୱାସୀ, ସେ ଚଟ୍‌କିନେ କୁଣ୍ଢାଇ ପକାଇ ମୁହଁଟାକୁ ବାମ୍ଫୁଡ଼ ହେଦାରେ ଖିନ୍‌ଖରପ କରିଦିଏ । ନିଆଁ ବରିଆଟାଏ ହାତରେ ଦେଖିଲେ ଏଇ ବାଳୁଆ ଜନ୍ତୁ ପ୍ରାଣ ବିକଳରେ ପଳାଇଯାଏ ।

ଧନେ ଗାଁର କେତେକ ନଥିଲି ବସି ବିଚରାବିଚରି ହେଲୁ—'କାମ କରି କରି କୁର୍ମି ହେଲୁ, ସହି ସହି ହେଲୁ ଅକର୍ମଣିଳା । ଆମ ଦୁଃଖ ବୁଝିବ କିଏ ? କଥା ଅଛି—ଯୋଡ଼ାକୁ ଘୋଡ଼ା ସରି ନୁହେ । ଜଣ ଜଣ ହୋଇ ଅଛୁ ବୋଲି ଆମେ ତାକୁ ଡରୁଚୁ; ଏକାଠି ହେଲେ ସେ ଆମକୁ ଡରିବ ।'

ଶଙ୍କଆ—ଯେତେବେଳେ ସେ ବନାଟି ବୁଲାଇବ, ସେତେବେଳେ କିଏ ସମ୍ଭାଳିବରେ ବାପା ? କାହା ଘର ପୋଡ଼ିବ, କାହା କୁଳ ବୁଡ଼େ-ଇବ, କିଏ ଜାଣେ ?

ଧୁସା—ମୁଁ ତା ହାତରୁ ବନାଟି ଛଡ଼ାଇ ଆଣିବି, ତା ନିଆଁରେ ତାକୁ ପୋଡ଼ିବି ।

Digitized by srujanika@gmail.com

ମିଚ୍ଛୁ—ଏ ପୋଡ଼ାପୋଡ଼, ଜଳାଜଳ, ମରାମରି କଥା ଏଠି ଚଳିବ ନାହିଁ ଧୁସୁ । ତା ହୋଇଥିଲେ, ଭରୁଚୁ, କଥା ଛାଡ଼ିଥାନ୍ତା, ଦ ଗୃରିଟା ଫାଶିକାଠରେ ଝୁଲିଥାନ୍ତ ? କିନ୍ତୁ ସେତିକରେ କଣ କୋଉଠି କଥା ଛାଡ଼େ ? ହିଂସା ପରେ ଆସେ ପ୍ରତିହିଂସା । ତାପରେ କେତେ ଚଢ଼ାଉତ୍ତର । ମେଘାସ୍ତ୍ରକୁ ବାୟୁବାସ୍ତ୍ର, ବାବଲାସ୍ତ୍ରକୁ ଅର୍ଦ୍ଧଚନ୍ଦ୍ର ବାଣ, ଶେଷକୁ ପାଶୁପତ ବା ବ୍ରହ୍ମାସ୍ତ୍ର—କିଏ ପ୍ରୟୋଗ କରିବ, କାହାକୁ ଜଣା ?

ଆମେ ଗାଉଁଲିଆ, ସାଦାସିଧା ମଣିଷ; କୂଟକପଟ ଭିତରେ ପଶି ପାରୁନାହିଁ; ଗୋଲମାଲରୁ ଦୂରେଇ ଦୂରେଇ ରହୁ ।

ଗୃଳକୁ ଗୃଳ ଲଗେଇ ଘର କରିଚେ; ଗାଁ । ସେ ମୁଣ୍ଡରେ ନିଆଁ ଲଗିଲେ ଏ ମୁଣ୍ଡକୁ ଚହଟି ଆସେ । ଭାଇକି ଭାଇ କାନ୍ଧ ମିଳେଇ ଚଳିବୁ ବୋଲି ଏ ବେବସ୍ଥା ।

ଆଜି ଗୋଟେ ଭାଇ ଆମ ଭିତରୁ ଫିଟି ପଡ଼ି ଅଲଗା ହୋଇ ଯାଇଚି, ତାକୁ ବୁଝେଇ ଶୁଝେଇ ବାଟକୁ ଆଣିବା ।

ଈଶର—ଯେତେ ଯାହା କଲେ ବି ସେ ବାଟକୁ ଆସିବା ଜନ୍ତୁ ନୁହେ । ବାଘକୁ କିଏ ମଣ କଲାଣି ?

ମିଚ୍ଛୁ—ସର୍କଶ ଦେଖିନାହୁଁ କରେ ? ସିଂହ, ବାଘ ସର୍କସ ମାଷ୍ଟରଙ୍କ ବୋଲ ନ ମାନିଲେ ଗୃଇଁ ଗୃଇଁ ବଜୁଲି ଗୃବୁକ ବସେ, ଏକା ପାହାରକେ ସାବାଡ଼ ହୋଇଯାଏ ସେ । ମଣିଷର ମଣ ନ ହୋଇ ଅଛି କୋଉ ଜନ୍ତୁ, ନାଚୁଆ ଆଉ କାମୁଡ଼ା ଘୋଡ଼ା, ନାକଶିଙ୍ଘିଆ ଗଣ୍ଡା, ଆଉ ମାରଣା ବଣ ମଇଁଷି ପର୍ଯ୍ୟନ୍ତ ?

ଧୁସା—ଏକା ପାହାରକେ କଥା ଛାଡ଼ିବ । ଫାଶି ଗଲେ ଯିବ । ଗାଁବାଲା ତ ଭଲ ରହିବେ । ମୋ ପିଲାପିଲିଙ୍କି ଚଳେଇ ନେଲେ ହେଲା ।

Digitized by srujanika@gmail.com

ମିଚ୍ଛୁ—ଏମିତ କଳ ଛୁଡ଼େନାଇଁ, ବଡ଼େରେ ଧୂସୁ । ରଜା ଛିନା ମରିବ, ତା ପୁଅପୁତୁର ଆମ ପିଠ୍ଲ ଲଟିବେ ନାଇଁ କ ?

ଗାଁରେ କେତେ କଳଗୋଳ ଲଗେ । ଶହରେ କେହ୍ନ କାହ୍ନା ଧାନଗଦା, ପାଲଗଦା, ନଡ଼ାଗଦା ପୋଡ଼ଦଏ କି ? ଗୃଷବାସ ଘେନ ଗାଁ । ତାକୁ ଘଡ଼କେ ଏମିତ ଉଜାଡ଼ ଦେଲେ ଆଉ ଗାଁରେ ରହ୍ନହବ ?

ହାତ ଲଗାଇଦେଲେ ତ କଥା ସରେ । ଆଗେ ବୁଝାଇଶୁଝାଇ ଭଗାରିକ ଭାଇପଣକୁ ଆଣିବା । ନ ବୁଝିଲେ ମାମଲତକାରକୁ ମାମଲତ ଭେଟି ଦବା । ବୁଦ୍ଧି ସାଙ୍ଗେ ବୁଦ୍ଧିର ଖେଳ ଲଗିବ । ଗାଁର ଗୋଟେ କତକତ ଖେଳ ଏ, ନଇଲେ ବୋହୂଚୋରିଆ ଖେଳ । ଗାଁର ଲକ୍ଷ୍ମୀ ବସିଚ ବୋହୂ ହେଇ । ସେ ବୋହୂକୁ ହରଣଗୃଲ୍ କର ନେଇଚ, ତା ସାଙ୍ଗେ ଲଢ଼େଇ କର ଆମେ ଆମ ବୋହୂକୁ ଫେରଇ ଆଣିବା ।

ତମେସବୁ ଯନ୍ଦ ମସମନ, ପିଠାପିଠିକ ବାହାରିବ, ମୁଁ ଏଥିରେ ପଶିବି ନାଇଁ; ସିଧା କଥା ଏ ।

ଧୂସା—'ହାରମ୍‌ଜାଦାକୁ ଠାଙ୍ଗିଆ ପଶା'—କଥାଟା ତେବେ ଅଛୁ କାହିଁକ ?

ମିଚ୍ଛୁ—ଏ ସଂସାରରେ ବିଷ, ଅମୃତ ସବୁ ଅଛୁ । ଅମୃତ କାଢ଼ି ଯେ ବାହାର କରେ, ସେ ମଣିଷ । ମଣିଷର ବୁଦ୍ଧିବିବେକ ଅଛୁ, ତାକୁ ଖଟାଇ ସେ ସଂସାରକୁ ସୁଖଶାନ୍ତିମୟ କରେ ।

ଓଲି ଭଗିଆ—ହଉ ତେବେ, କଣ କରୁଚ, କର । ତମ ଗୋଇଠିକ ଗୃହ୍ଁ ଆମେ ଗୃଲବୁ ।

ମିଚ୍ଛୁ—ଭାଗଧାନ ଦେଲାବେଳେ ରସିଦ୍ ମାଗିବ । କାଳେ ଭାଗ-ଗୃଷୀ ଭାବେ ନାମ ଦରଜ ହେଇଯିବ, ଏଇ ଶଙ୍କାରେ ଦରିଯା ରସିଦ୍ ଦବନାଇଁ । ତାପରେ ଆମେ କହିବା—ତମେ ରସିଦ୍ ଦବନାଇଁ ତ ଆମେ

Digitized by srujanika@gmail.com

ଧ୍ୟାନ ଦବୁନାହିଁ । ତାପରେ ସେ ତମ ନାଁରେ ଖେସରା ନାଲସ୍ କରବ, ଆମେ ଭାଗଧାନ ଦକ ତା ବରୁଦ୍ଧରେ ମକଦ୍ଦମା ଲଢ଼ିବା ।

ପୁରୁଷୋତ୍ତମରେ ଜଗନ୍ନାଥ ଦର୍ଶନ ହବ; ମାହାଦ୍ଧ ସେବା ହବ, ସମୁଦ୍ର କୂଳେ ବୁଲ ବୁଲ ମନଫୁଲଣିଆ ଗୀତ ବ ବୋଲବ ।

ମାଛ ତେଲରେ ଯେ ମାଛ ଭାଜେ, ତାଠୁ ବଳ ଚଲାକ ଆଉ କଏ ଅଛୁ ?

ସ୍ୱାର୍ଜିତ ଟଙ୍କା, ଯାହାକୁ ସେ ଭାବୁଥିଲ ଅକାଳେ ଅବେଳେ ବନ୍ଧୁ ହବ ବୋଲ, ତା ବରୁଦ୍ଧରେ ଏବେ ବଇରୀ ହୋଇ ଛିଡ଼ା ହବ !

ଏ କଥାଟା ସମସ୍ତଙ୍କ ମନକୁ ପାଇଲା । ବେଠି ହଲ, ବେଠି ମଣିଷ ବନ୍ଦ ହେଲ; ଏଥର ଦାଣ୍ଡ ମଣିଷ ଲଗାଇ ସବାପଛରେ ଦରଯା ବସ୍ତୁ ଓ ରୁଆ କାମ କଲ । କଥା ଅଛୁ—

'ଗୃଷ ତର ତର ବଣିଜ ମଠ' ।

ଗୃଷରେ ପାଗ ବଗିଡ଼ଲେ ଯେତେ ଚନ୍ଦନ ଲପିଲେ ବ ଯେମିତ ହବାର ହୁଏନାହିଁ ।

ଏ ବର୍ଷ ମକଦ୍ଦମଙ୍କ ବଳରୁ ଅଧାଅଧି ଚଢ଼ଆ ପଡ଼ଲା । ସେଥିକ ଭାଗୁଆଳୀ ଅଧାଅଧି ଭାଗଧାନ ଦେଲେ ନାହିଁ । ଭାଗଜମି ବୋଲ ସାଆନ୍ତଙ୍କ ନଜ ଗୃଷଜମିରୁ ଧାନ କାଟିନେଲେ । ପଗ୍ଭରଲେ କହଲେ—ଏ ଆମ ଭାଗଜମି; ସାଆନ୍ତେ ନ ମାନବେ ତ ଗ୍ଭର କଣ ?

ଅମାନଆଙ୍କ ଉପଦ୍ରବ ଦନୁଁ ଦନ ବଢ଼ି ଗ୍ଭଲଲା । ହେଲ ଫସଲରେ ଗୋରୁ ପୂରେଇ ଦେଲେ । ଗୋରଡ଼ାରୁ ନଡ଼ଆ ତୋଳ ନେଲେ, ପୋଖରୀରୁ ଘଣ୍ଟଅଧିଆ ମାଛ ବ ମାରନେଲେ ।

ସେଥିକ ପୁଣି ଦୁର୍ଯ୍ୟୋଗକୁ ଦେଖ ଯେ, ବାପମାଆ ଦହେଁ ଓକାଓକ ହେଇ ବଦା ହେଲେ ।

Digitized by srujanika@gmail.com

ମକଦ୍ଦମେ ସିଲିଂ ଉପୁରେ ବନ୍ଧୁବାନ୍ଧବ ଜ୍ଞାତିକୁଟୁମ୍ବଙ୍କ ନାଆଁରେ କେତେ ଜମି ବେନାମୀ କରିଦେଇଥିଲେ । ମୋଫତ ସମ୍ପତ୍ତିତକ ପାଇଁ କେହି ଆଉ ଦୁଆର ମାଡ଼ିଲେ ନାହିଁ ।

ଏତିକି ବେଳେ ସ୍ୱାଇମାନେ ଅଡ଼ି ବସିଲେ—ଭିନେ ହେବୁ ! ହେଲେ । 'ଭିନେ ହେଲା ଭାଇ ପଡ଼ଶାକୁ ଲେଖା ନୁହେ ।' ସେଇଆ ବି ଦେଖାଗଲା ।

ଏମିତି ମକଦ୍ଦମଙ୍କ ସାହସ କମିଲା, ବଳ ଭାଙ୍ଗିଲା । ନାନା ଦୁଶ୍ଚିନ୍ତା ମଧ୍ୟରେ ଦେହରେ ରୋଗ ବି ପଶିଲା । ଦିନରାତି କାମ କଲେ ବି ଯାହାର କାମ ଛୁଣ୍ଡ଼ୁ ନ ଥିଲା, ସେ ବସିଗଲା ଯେ ଗଲା ।

ଜାନୁଟା ଭାଙ୍ଗିଥିଲେ କଣ ଅଧିକା ହୋଇଥାନ୍ତା ? ଆମେ ତ ତା ମନଟା ଭାଙ୍ଗିଦେଲୁ !

ଜାନୁ ଭାଙ୍ଗିଥିଲେ ସେ ଗୋଟାଏ ନକଲି ଗୋଡ଼ ଲଗାଇ ଚାଲିଥାନ୍ତା । ମନ ଭାଙ୍ଗିଲେ ?

ଘରକୁ ଫେରିଗଲା ବେଳେ ବି ସମୁଦ୍ର ଶୁଣିଲେ କେଳାର ପଦ୍ମତୋଳା—

'କଂସର ଘରଣୀ ପଦ୍ମାବତୀ ରାଣୀ
ସେ କରେ ଧନନ୍ତର ଓଷା
ଲକ୍ଷେ ଭାର ପଦ୍ମ ଦେବୁ କି ଦାଶରଥି,
ନ ଥିବ ପାଖୁଡ଼ା ମିଶା ।
କି ଗୋବିନ୍ଦ ହରେ.........

Digitized by srujanika@gmail.com

## ॥ ନଅ ॥

ସତ୍ତୁ—ସମୁଦ୍ର, ଆଜ ଗାଁ ବୁଲିପିବା ନାହିଁ । ଆସ, ମୋ କଥା ଶୁଣିବ । ଦ୍ର ସମୁଦ୍ର ଯାଇ ବାଡ଼ଆଡ଼ ଖଳା ବାଡ଼ରେ ବସିଲେ । ଏ ପଟେ କୁଟାଗଦା, ସେ ପଟେ ନଡ଼ାଗଦା, ବାଁ ପଟେ, ଡାହାଣ ପଟେ ଅଗିଆ-କଟା, ମୂଳବାଡ଼ଆ ଧାନଗଦା, ଛପର ହୋଇ ଦ୍ର ପାଖକୁ ସୁନା କେଣ୍ଡା-ଗୁଡ଼କ ଲମ୍ବିଚ । ମଝିରେ ମେଢ଼, ପଦ୍ମ, ରଥ, ବୋଇତ, ଲକ୍ଷ୍ମୀପାଦ ଚିତା କୁଟା ହୋଇଚ ।

ଡେଙ୍ଗା ନଡ଼ଆ ଗଛ ଅଧାରେ କାଠହଣା ହାଣୁଚ, ହଳଦ-ବସନ୍ତଟିଏ 'ସୀତା କୋକଲେ' କରୁଚ । ଦ୍ର ସମୁଦ୍ର ଖଳାବାଡ଼ରେ ବସିଲେ । ସତ୍ତୁ କହଲ—ତୁମ ରଜା ଆମ ରଜାର ଲଭଦୁଆ ହବନାହିଁ । ବୁଝିଲ, କାହିଁ ହୀରା, କାହିଁ ଖୀର ? କାହିଁ ରାମଚନ୍ଦ୍ର ମହାରାଜ, କାହିଁ ରାମା ଭଣ୍ଡାରୀ !

ଆମ ରଜା କେତେବେଳେ ହାତୀରେ ପଲସୁ ଥାନ୍ତି, କେତେ-ବେଳେ ଘୋଡ଼ା ଝପଟଉ ଥାନ୍ତି, କେତେବେଳେ ବା ମଟରରେ ସାଇଁକନେ ଉଡ଼ଯାନ୍ତି । ଖୁବ୍ ହେଲେ ତମ ରଜା ଶଗଡ଼ ମହଣ୍ଡାରେ ବସି ଠାକଳା ଫୁଟାଇ ଗଜା ଦାମୁଡ଼ ହଳେ ଦଉଡ଼ାଉଥାନ୍ତି ।

ତମ ରଜା ଗାଉଁଲିଆ, ମଳମୁଣ୍ଡିଆଟାଏ । ହେଲେ ବି ସେ ଆମର ଜଣେ ଭାଇଆ ପରି ଦଶନ୍ତି । ସେ କଟୁ ନିଷ୍ଠୁର ହୋଇପାରନ୍ତି, କିନ୍ତୁ ନୃଶଂସ ନୁହନ୍ତି । ଲୋକେ କରୁଣ ସ୍ୱରରେ କାନ୍ଦିଲେ ଆମ ରଜା ପେଙ୍କାଳି ବଜାନ୍ତି ।

ମିତ୍ତୁ—ସେ ପରି କୁଆଡ଼େ ଜୀବନ୍ତା ଦେବତା !

Digitized by srujanika@gmail.com

ସତ୍ତୁ—ଦେବତା ନା ଫେବତା । ତାଙ୍କ ଗତିପତି ଦେଖିଲେ ତୁମ ମନରୁ ଭକ୍ତିଫକ୍ତି କୁଆଡ଼େ ଉଡ଼ିଯିବ । ଆମେ ଯାହା କଲେ ବ ସେ ଦୋଷ ବାଛନ୍ତି । ସିଧା ହେଇ ଚାଲିଲେ ଦୋଷ, ନଇଁ ନଇଁ କ ଡେଇଁ ଡେଇଁ ଚାଲିଲେ ଦୋଷ । ଛତା ଟାଣି କ ଜୋତା ମାଡ଼ି ଚାଲିଲେ ଦୋଷ, କୋଠାବାଡ଼ି ତୋଳିଲେ କ ବେଉସା ମେଲିଲେ ଦୋଷ । ଖାଲି ଦୋଷ—ଦୋଷ । ପ୍ରଜା ହେଇ ସେ ରାଜ୍ୟରେ ଜନ୍ମିଲେ ପ୍ରକୃତରେ ଦୋଷ ।

ଝବାଦଆ ଗୁହା ଗୁଜୁରିଲେ ଏମିତି ଖଞ୍ଜରେ ଧରେଇ ନେବେ ଯେ ପଡ଼ୋଶୀ ତାର ଟେର୍ ପାଇବେନି । ଗୋଟେ ସାଉଁଳିଆ କାଠ ଖମ୍ବରେ ତେଲ ବୋଳି କହିବେ—ଚଢ଼୍ । ନ ଚଢ଼ି ପାରିଲେ ହଗାନଗା ମାଡ଼ । ମାଡ଼ ବାଜେ, ମାଦଳ ବାଜେ । କାନ୍ଦ ସ୍ୱର ଉଠେ, ଯୋଡ଼ି ମହୁରୀ ଛୁଟେ । ଅଚେତା ହବା ଯାଏ ଚଢ଼ଉଥାନ୍ତି ମାଡ଼ ।

କାଏ ଟିକସ କ ମାଗଣ ନ ଦେଲେ ତାଲବେତାଲ ଯାଇ ଘର ବୋହି ଆଣନ୍ତି ।

ମିଚ୍ଛୁ—ମାଗଣ କଣ ?

ସତ୍ତୁ—'ମାନେ—ଜେମାମଣି କ ଜେନାମଣିଙ୍କର ପାଟମୁହଁ କ ସ୍ୱନକ୍ଷତ ହବ, ପ୍ରଜାମାନେ ଦିଅ । ନାଆଁକୁ ମାଗଣ, ଏ ଏକ ଜୁଲମ୍, ଚୋଟିଧରା କାମ । ପାଠୁଆ କ ଯାହାବାଲା ଯୋଉ ମାଗଣ କରନ୍ତି, ଯାହାକହୁ ଦେଲେ ସନ୍ତୋଷରେ ଚାଲିଯାନ୍ତି । ରଜାର ମାଗିବା ଲୋକ ଦେଖିଲେ ଲୋକଙ୍କମନରେ ଚୁନଆଁ ପଶିଯାଏ । 'ଏତିକ ଟଙ୍କା ମାଗଣ ଦବାକୁ ହବ, ନଇଲେ ଗୁହାଳୁ ବଳଦ ଫିଟାଇ ନବୁ; ଘର କୋରଖ କରିନବୁ ।'

ଏ ସବୁ ଜନପଦ ଅନ୍ୟ ଗାଁରେ ନିଲାମ୍ କରି ମାଗଣ ଆଦାୟ ପାନ୍ତି । ଯମ କବଳରୁ ଖାହି ଅଛୁ, ରାଜକବଳରୁ ନାହିଁ । ମାଗଣ ଦେଇ

Digitized by srujanika@gmail.com

ନ ପାରିଲେ ରଜା ଦୁଆରେ ଯାଇ ଥରକୁ ଥର ବେଠି ଖଟି ଶୁଝିବାକୁ ହୁଏ । ପୁଅ ଘରୁ ଭାତ ବୋହିନେଇ ବାପର ଜୀବନ ବଞ୍ଚାଏ ।

ଟିକସ ଉପରେ ଟିକସ ବର୍ଷସାରା ଦେଇ ଦେଇ ଅସ୍ଥି ଭାଙ୍ଗି-ଯାଏ । ରଜାକୁ ସବୁବେଳେ ନଅଣ୍ଟ । ଆମେ ଯେ ମାଇପକୁ ବନ୍ଧକ କରି ଦେଉ, ସେ କଥା ବୁଝିବା ଲଗି କାହାର ହୃଦୟ ଅଛି ? ତୁମେ ମର ସର, ଦିଅ, ଦେବା ଲଗି ତୁମର ଜନମ, ନେବା ଲଗି ଆମର । ଏଇ ରଜା ! ସେ ଗୋଟେ ଶଲ, ଛଞ୍ଚାଣ, ବାଘ କି ଅଜଗର ହୋଇ ପାରେ । ତାକୁ ମଣିଷ, ପୁଣି ଦେବତା କାହିଁକି କୁହାଯିବ ? ସମୁଦ୍ର, 'ଯତନନଗର' କଥା ଶୁଣିଚ ?'

ମିତ୍ରୁ—ବମ୍ବେ ନଗର, କଲିକତା ନଗରୀ କଥା ଶୁଣିଚ । ଯତନନଗର କୋଉଠି ଅଛି ?

ସତ୍ରୁ—ଏଟା ସହର ନୁହେ, ଗୁଡ଼େ ଗ୍ଲୋଟ ଗ୍ଲୋଟ ପାହାଡ଼, ଜଙ୍ଗଲ, ଏଠି ମଣିଷ ନାହାନ୍ତି, ଅଛନ୍ତି ଭାଲୁ, ଅଜଗର, ଅହିରାଜ ସାପ । ପଞ୍ଚାୟତଙ୍କ ମର୍ଜି ହେଲା—ଏଇଠି ଗୋଟେ ରାଜବାଟି କରିବେ ! ତା ଉପରେ ଛୁଡ଼ା ହେଇ ଖୋଲା ପାହାଡ଼ୀ ହାଓ୍ବା ଖାଇବେ, ଉଣ୍ଡି ଦେଖିବେ--ରାଜଧାନୀରେ କିଏ କଣ କରୁଚି ! ରାଜ୍ୟରେ କିଏ ନିଆଁ ଜାଳିବାକୁ ଚେଷ୍ଟା କଲେ ପାଇକ ପଠାଇ ତାକୁ ଥଣ୍ଡା କରିଦେବେ ।

ମିତ୍ରୁ—ରଜାର ତ ଠଙ୍କା ଅଛି, ସେ ଗୋଟାକ ଜାଗାରେ ତିନଟା ଉଆସ ତୋଳିଲେ ଏଥିରେ କାହାର କଣ କହିବାର ଅଛି ?

ସତ୍ରୁ—ରଜା ନିଜ ପକେଟରୁ ଖର୍ଚ୍ଚ କଲେ କିଏ କାହିଁକି କଣ କହନ୍ତା ? ଏ ଜଙ୍ଗଲି ରାଜବାଟିଟା ତିଆରି ହବ ପ୍ରଜାଙ୍କ ବେଠି-କାଠରେ !

ରୋଜଗାରିଆ ମଣିଷଟିକୁ ବେଠିକୁ ପଠାଇଲେ ଏଣେ ଘର ଚଳିବ କେମିତି ? ବୁଢ଼ାବୁଢ଼ୀଙ୍କୁ ପଠାଗଲା । ଏ ପଥରଉଠା କାମକୁ

Digitized by srujanika@gmail.com

ବୁଢ଼ାହାଡ଼ା ପାରବେ କୋଉଠି ? କେତ୍ତୁଠା ବୁଠ୍ ମାଡ଼ ଖାଇ ସେ ପ୍ରରୁ ଦେଖିଲେ । ପଥର ଘୋଷାରୁ ଘୋଷାରୁ କେତ୍ତୁଠା ଘୋଡ଼ା ଶୋଇଗଲେ, ପଥରବୁହା କଷ୍ଟ ସହି ନ ପାରି କେତ୍ତୁଠା ହାଣ୍ଡି ବି କାନ୍ଧ ପକାଇଲେ । ମଣିଷକୁ ଯୋଉଠି ଆଡ଼ ଆଖିରେ ଗୃହୁଁ ନାହାନ୍ତି, ସେଠି ପଶୁଙ୍କୁ ପଗ୍ଭରୁଚ କିଏ ?

ମିନ୍ଦୁ – ପାହାଡ଼ ଉପରେ ଏବେ କଣ ସେ ଉଆସ ଅଛି ?

ସନ୍ତୁ – ସରଥିଲା କୋଉଠି ? ଅଧା ତିଆରି ବେଳକୁ ଗୋରା ଫଉଜ ମାଡ଼ ଆସିଲେ, ବପଲ୍ଲୀ ପ୍ରଜାମଣ୍ଡଳ ସହିତ ଲଢ଼େଇ ଲାଗିଗଲା । ଶେଷକୁ ତଡ଼ା ଖାଇ ରଜା ଚଳେ । କଥାକେ କଥାକେ ଆସି ପିଠିରେ ପଡ଼ିଥିବା ଗୋରା ସରକାର ବି ଗଲେ । ରଜାର ରାଜୁତି ଗଲା ପରେ ଲୋକେ ସେଇ ପାହାଡ଼ୀ କୋଠାର ଝରକା, ଦୁଆରବନ୍ଧ ତାଡ଼ନେଲେ, ପଥର ବି କାଢ଼ି ନେଲେ । ଏବେ ସେ ଘର ଫାଟି ଆଁ କରି ଗୃହିଁଚ; ସାପ ମୁହଁ କାଢ଼ିଛନ୍ତି । ଲଙ୍କାପୋଡ଼ା ପରେ ହନୁ ଯେପରି କାନ୍ଥକୁ କାନ୍ଥ ଡିଆଁ ମାରିଥିଲା, ସେମିତି ନାଲିମୁହାଁ ପାତି ଡିଆଁ ମାରୁଛନ୍ତି ।

ମିନ୍ଦୁ – ଏ ରଜା ତ ଶୁଣିଚ, କେତେ ନଶ ଓପାଡ଼ୁଛନ୍ତି । ଯାଙ୍କ ନଶ ଫେର୍ ଓପାଡ଼ିଲା କିଏ ?

ସନ୍ତୁ – ରଜା କି ଲାଟ୍ ସାହେବ, ଯେ ହେଉ, ଏ ସଂସାରକୁ କିଏ ତମ୍ବା ମୁଣ୍ଡ ବାନ୍ଧି ଆସିଚ ? କାହା ଦମାକ୍ କାଳ ସହେ ? ତାହୁଁ ବଳ ତାହୁଁ ବଳ ତ ଅଛନ୍ତି । ପୋକ କୀଟଙ୍କୁ ବେଙ୍ଗ, ବେଙ୍ଗଙ୍କୁ ସାପ, ସାପଙ୍କୁ ମୟୂର, ମୟୂରଙ୍କୁ ଶିଅର ।

ରଜାଙ୍କ ରଜା ଫିରଙ୍ଗି ଗଲେ । ସେ ସିନା ରଜାଙ୍କ ଦୋଷକୁ ଘଣ୍ଟ ଘୋଡ଼େଇ ରଖୁଥିଲେ ! ସେ ଗଲାକ୍ଷଣି ରଜାଙ୍କ ତିଳେକ ଦୋଷ, ପ୍ରଜାଙ୍କୁ ତାଳ ପରି ଲାଗିଲା । ପ୍ରଜାଏ ମାତି ଉଠିଲେ, ଖଜଣା ଟିକସ ମାଗଣ ବନ୍ଦ କଲେ । ରଜା ରାଗି ନିଆଁ ହୋଇ ଗାଁକୁ ଗାଁ ପୋଡ଼ି

Digitized by srujanika@gmail.com

ଦେଲେ । କାହା ଜମି ବାଜ୍ୟାପ୍ତ କଲେ ତ କାହା ଘର ବୋଝିନେଲେ । ହେଲେ ଏ ଜୁଲମ୍ ବେଶୀ କାଳ ରହିଲା ନାହିଁ ।

ଫିରଙ୍ଗି ସିଂହର ଦାଢ଼ି ଯେ ଗୋଟା ଗୋଟା ଉପାଡ଼ି ଥିଲା, ସେ କୁକ୍ଷି ଅସରପାଙ୍କ ଉପରେ କାଣୀ ବଳେଇ ହୋଇଥିବା ଏ ରଜାକୁ ଡରୁଛି ନା ?

ଏବେ କଟକ ରାଜଭବନକୁ ଜଣେ ବଡ଼ କଂଗରସ ସରକାରୀ ମନ୍ତ୍ରୀ ଆସି ଜବରଦସ୍ତ ରଜାଙ୍କଠଉଁ ରାଜ୍ୟ ଲେଖେଇ ନେଲେ । ଏବିବାକୁ ଚିନ୍ତିବାକୁ ରାଜାଙ୍କୁ ଫୁରୁସତ୍ ବି ଦେଲେ ନାହିଁ । ଓଲଟି ଧମକ୍ ଦେଲେ—ସୁନା ପୁଅ ପରି ରାଜ୍ୟ ଛାଡ଼ି ଦିଅ ତ, ଭତ୍ତା, ରାଜବାଟି, ରାଜା ଉପାଧି ଭୋଗ କରିବ । ତମ ଆଡ଼ାଗୌଡ଼ା ରଖିବାରେ କିଛି ବିଶେଷ ଅସୁବିଧା ହବନାହିଁ ।

ଠାଲ୍‌ଟୁଲ୍ କରିବ ତ ପ୍ରଜା ବିପ୍ଳବ କଲେ ଫିରଙ୍ଗି ପରି ଆମେ ଯାଇ ତମ ପିଠିରେ ପଡ଼ିବୁ ନାହିଁ । ତୁମେ ବିପ୍ଳବ ଦମନ କରି ନ ପାରିଲେ ଆମ ସୈନ୍ୟ ଯାଇ ତୁମ ରାଜ୍ୟ ଦଖଲ କରିନେବେ । ସେତେବେଳେ ତୁମକୁ ଆଉ କିଛି ସୁବିଧା ଭୋଗ କରିବାକୁ ଦିଆ ହବ ନାହିଁ । ତୁମେ ଜଣେ ରାଜବନ୍ଦୀ ହେବ ମାତ୍ର ।

ଏ ଧମକ ଶୁଣିଲା ପରେ କଟକ ରାଜଭବନରେ ଗଦା ହୋଇଥିବା ରାଜାଙ୍କ ଭିତରୁ କାହାର କଲିଜା ପାଣି ଫାଟିଗଲା, କାହାର ଲୁଗାରେ ପଟାରେ ବି ପଡ଼ିଗଲା । ଯିଏ ମୁହଁକୁ ସେ, ତା ମୁହଁକୁ ସିଏ ଚାହିଁ ରହିଲେ ।

ରଜାଙ୍କ ହାତରେ କି ଅସ୍ତ୍ରବଳ, ସୈନ୍ୟବଳ ଅଛି ଯେ ସେ ସରକାରଙ୍କ ବିରୁଦ୍ଧରେ ଲଢ଼େଇ କି ଗ୍ରହି ପଚେଇବେ ! ପ୍ରଜାମାନଙ୍କର କି ହିତ ସାଧିଛନ୍ତି ? ସେମାନଙ୍କୁ କୋଉ ମାନ ସମ୍ମାନରେ ରଖିଛନ୍ତି ଯେ ସେମାନେ ଆସି ଏ ଆପଦରେ ପଛରେ ଛିଡ଼ା ହେବେ !

Digitized by srujanika@gmail.com

ଗଡ଼ଜାତରେ ରାଜଯୁଗର ଅନ୍ତିମ କାଳ । ଚାରିଆଡ଼େ ସ୍ୱାଧୀନତାର ଜୟ ଜୟକାର । ପ୍ରଜାମଣ୍ଡଳ କର୍ମୀଙ୍କ ପଟୁଆର, ହୁଲହୁଲି କଥା, ପଟୁଆର୍ ସ୍ଲୋଗାନ୍‌ରେ ନେତା ପଚାରୁଛନ୍ତି—ଆରେ ଏ କି ରଜା ? ଉତ୍ତର ମିଳୁଛି—ଖଣ୍ଡି ଖଜା !

'ଆରେ ଏ ରଜା ଗଲା ତ କଅଣ ହେଲା ?'

'ଭଅଲ ହେଲା ଭଅଲ ହେଲା !'

ରଜାଙ୍କ ପାଇକ, ଯାହା ବାଘୁଆ ନିଶକୁ ଦେଖି ପ୍ରଜା ଛନିଆଁ ହଉଥିଲା, ତାକୁ ଧକ୍କା ଦେଇ ପଟୁଆର ଚାଲିଲା ।

ରଜାଙ୍କ ପାଖ ଲୋକମାନଙ୍କ ଶିଖ ମଉଳି ଯାଇଥିଲା । ରାଜାଙ୍କ ଜ୍ଞାତି କୁଟୁମ୍ବ, ବନ୍ଧୁ ବାନ୍ଧବ, ରାଜବାଟିର ରାଣୀ ଦାସଦାସୀ ପର୍ଯ୍ୟନ୍ତ କାହାରି ମନରେ ସୁଖ ନ ଥିଲା । ଆପଣା ମାନ୍ ଜଗି ରାଜ କର୍ମଚାରୀମାନେ କବାଟ କିଳି ଘରେ ପଶିଥିଲେ । ନିଜ ମର୍ଜିକୁ ରାଜ ମର୍ଜି ଭାବେ ଚଳାଇଥିଲେ ; ଜଣେକୁ ତୋଷିବା ଲାଗି ଗୋଟା ରାଜ୍ୟ ଶୋଷି ଚାଲିଥିଲେ ସେମାନେ ।

ରଜା ଛନିଆଁ । ଅକାଳ ଚଡ଼କରେ ତାଟଙ୍କା ହୋଇଯାଇଥିଲେ ସେ । ନିଶ ଗଲୁ କରୁଥିଲେ ହ ଆଉ ମୋଡ଼ିବାକୁ ଭରସା ପାଇଲେ ନାହିଁ । ସତେ ଯେମିତି ହାଣ ମୁହଁକୁ ଯାଉଛନ୍ତି, ସେମିତି ନଇଁ ନଇଁ ଜଣେକୁ ଜଣ ଗଡ଼ଜାତ ରଜା କଟକ ଯାଇ ଦସ୍ତଖତ ଦେଇ ଆସିଲେ । ମୁହଁ ଲୁଚାଇବାକୁ ନିଜ ରାଜ୍ୟରେ ଜାଗା ମିଳିଲା ନାହିଁ । ସମସ୍ତେ ଯେପରି କି ଆଙ୍ଗୁଠି ଦେଖେଇଥିଲେ ତାଙ୍କରି ଆଡ଼କୁ ।

ଯୋଉଠି କାଲି ମହାରାଜା ଥିଲେ, ହଠାତ୍ ସେଠି ସେ ହୋଇଉଠିଲେ ଏକାଧାରକିଆ, ଅଛୁଆଁ । ଚାମୁଁ, ମଣିମା, ମୁଣୋହିଁ, ପହଡ଼ ଆଦି ଏବେ ହୁଲହୁଲି ଶବ୍ଦ ପରି ଲାଗିଲା ।

ରଜା ଥିଲା ପ୍ରଜାଙ୍କୁ ପେଡ଼ିବା ପେଷିବାର ଏକ ଘଣା । ଗେଲରେ ଗେଲ୍‌ରେ ତେଲ ବାହାର କରିବା, ଆଙ୍ଗୁଠି ଗେଞ୍ଜି ଆଖିରୁ ଲୁହ

Digitized by srujanika@gmail.com

କାନ୍ଦିବାର ଗୋଟେ କଳ, ଗଜ କବଳରୁ ଖସିବା ଅର୍ଥ କୁମ୍ଭୀର ପାଟିରୁ ଖସି ଆସିବାର ଏକ ଅନୁଭବ ।

ଅତ୍ୟାଗୃତଙ୍କ ଅତ୍ୟାଗ୍ରହ ଭୟରୁ ଆମ ରଜା ଏବେ କଟକରୁ ସିଧା ଚଳାଇଲେ କଲିକତା—ଅଜ୍ଞାତ ବାସ !

ସତେ ସେ କେମିତି ମୁହଁ ଦେଖାନ୍ତେ ? ନୁଖୁରା ମୁହଁ, ନିଜ ଅଶାନ୍ତକୁ ଭୁତ ପରି ଡରୁଥିବାର ମୁହଁ ।

କୋଉ ରଜା ଘୋର ପାପର ପ୍ରାୟଶ୍ଚିତ୍ତ କରିବା ଲାଗି ତୀର୍ଥବ୍ରତ କରି ବୁଲିଲେ । କ୍ରମେ ଗଡ଼ ଆଉ ଗଡ଼ଜାତର ନାଁ ଲୁଚିଗଲା । ରଜା କଣ ଜାଣିବା ଲାଗି ଲୋକେ ଯାହା ଦେଖିଲେ ବା ତାଆସ ମୁଠା ଖୋଜିଲେ ବା ଅଭିଧାନ ଖୋଲିଲେ ।

ରଜାଙ୍କ ଲାଗି ମୁଁ କଣ ଗାଇବି ସମୁଦ୍ର ? ଲୋକେ କଣ ଗାଇଛନ୍ତି, ଶୁଣ ।

‘ମାଆ ବୋଲେ ଝିଅ ଦେଉଳକୁ ନ ଯା
ବାଳ ତ କୁଞ୍ଚି କୁଞ୍ଚି ଅଣ୍ଟାସରୁ ମଝା
ତତେ ତ ନବ ବୋଲିଲେ ବସିବ
କଳଙ୍ଗ ଦେଶ ରଜା ।’

‘ବୁଢ଼ାକୁ ନ ପିନ୍ଧ ପଞ୍ଝର କାଠି ଦେଖି
ବୁଢ଼ା ଥିଲେ ଗୁଣ କରିବ ବାମଣ୍ଡା ଗଡ଼ ବେଠି
ବାମଣ୍ଡା ଗଡ଼ ବେଠି ଶିଆମାଳ ଚଟି
ବୁଢ଼ା ଥିଲେ କଢ଼ାଇବ ଚୁନ ଯେ ଘେଙ୍ଗୁଟି ।’

ଗୋଟିକରୁ ରଜା ପ୍ରଜାର ଯୁବତୀ ଝିଅକୁ ହରଣଚାଲ୍ କରିନବା, ଆରଟିରୁ ପ୍ରଜାକୁ ବେଠି ଖଟାଇବା କଥା ଜଣାପଡ଼େ ।

Digitized by srujanika@gmail.com

## ॥ ଦଶ ॥

ବଡ଼ କରୁଣ ସେ ଗୀତ, ଦ୍ୱ ସମୁଦ୍ର ଶେଷ ଥରକ ପାଇଁ ଗାଁ ବୁଲିଗଲା ବେଳେ କାନରେ ବାଜିଲା—

'ପର ଝିଅ ନରମାଖୀ
ମାଗି ତ ନ ଖାଏ ଯାଚି ତ ନ ଖାଏ
ଲୁହ ବୁହେ ଦୁଇ ଆଖି ।'

'କାକୁଡ଼ି ବାଡ଼ିକି ରଞ୍ଜା ଦେଇଥିଲି
ବଳେ ମାଡ଼ିଗଲା ପୋଇ
ଶେଯ ଶୋଯାଇଲି ମୋ ଧନ ପାଇଁ ଲୋ
ମଙ୍କା ନେଲେ ନଣନ୍ଦେଇ ।'

ଜାନୁଭଙ୍ଗା ଏଠି ମୁଣ୍ଡ, ସେଠି ଗଣ୍ଡି, ଅପନ୍ତରା ପଡ଼ିଆରେ ଭଂଗା ଖଣ୍ଡା, ତରବାରୀ, ରଥ, ଧନୁ, ମଲା ହାତୀଘୋଡ଼ା । ବୋହିଯାଉଚି ରକ୍ତ ନଦୀ, ଗୋଟା ଗୋଟା ଶବ ଭସାଇ । ଏକୁଟିଆ ଆଣ୍ଠୁମାଡ଼ି ପଡ଼ିଚି ଦୁର୍ଯ୍ୟୋଧନ; ବୋହିଯାଉଚି ଲୁହ ଲହୁ । ବେଢ଼ି ଯାଉଛନ୍ତି ମାଛି । ବାଡ଼େଇବାକୁ ହାତ ଯାଉନାହିଁ । ଶୁଖି ଯାଉଚି ତୋଣ୍ଟି । ପାଣିଟୋପିଏ କିଏ ଦଉଚି ? ରାଜବାଟିରେ ଅଗ ଗୋଡ଼ରେ କଣ୍ଟା ବାଜିଥିଲେ ଧାଇଁ ଆସିଆନ୍ତେ ରାଣୀ, ପୋଇଲିପୋଇଲୀ । ଯୁଦ୍ଧକ୍ଷେତ୍ରରେ ପଡ଼ିଲା ମାନେ ମଲା । ଏଠି କିଏ ହେପାଜତ କରୁଚି ?

ଏଇ ଶେଷ ବେଳେ ଦୁର୍ଯ୍ୟୋଧନର ମନ କଥା କଣ କିଏ କହିପାରିବ ? ତାକୁ ଏବେ ପାଞ୍ଚଖଣ୍ଡ ପଡ଼ା ଗାଁ ମାଗିଲେ ସେ ଦିଅନ୍ତା ?

Digitized by srujanika@gmail.com

ଅଂଶବଅଂଶ ହରାଇ କୃତ୍ରିମ ଗୋଡ଼ଟିଏ ଲଗାଇ ମାମା ଦୁର୍ଯ୍ୟୋଧନ କଣ ଆଉ ବଞ୍ଚି ରହିବାକୁ ଚାହିଁଥାନ୍ତା ?

ଯାହା ଦେଖାଯାଏ, ବରମଲ ଦୁର୍ଯ୍ୟୋଧନ ଦେହରୁ ଝରଝର ରକ୍ତ ପିନା ସରିଥିଲା, ରାଗ କଣ ମରିଥିଲା ? ତା ହେଲେ ଏଇ ଶେଷ ମୁହୂର୍ତ୍ତରେ ଅଶ୍ୱତ୍ଥାମାକୁ ସେନାପତି କରି କାଇଁଶିକା ଶର ପେଷିଥାନ୍ତା କାହିଁକି ?

ଏଥରକ ଗଲା—ଆମ ଦରିଯା ମନରୁ ରାଗରୋଷ ମରିଚ କି ନାହିଁ ଦେଖିବା—ହେଇ ଶୁଣ—କଣ ଗୁଣୁଗୁଣୁ କରି ବୋଲୁଛି !

'ପାଦ ଯେ ବୋଲଇ ରେ ମନ ସହସ୍ର ବଚନ
ମହାପୁରୁଙ୍କର ଶରଧା ବାଲିରେ ଚାଲିଯିବାକୁ ମନ
ଏଥରକ ପିବା ମନ ଯାତ ଘରେ ଥିବା
ମହାପୁରୁଙ୍କର ଶରଧା ବାଲିରେ ଚାଲି ଚାଲି ଯାଉଥିବା
ଆଣ୍ଠୁ ଯେ ବୋଲଇ ରେ ମନ......'

ମିଲୁ—ପକ୍ଷୀବସାରେ ଧମଣା ପଶିଲେ ଯେମିତି, ମୋତେ ଦେଖିଲେ ସେମିତି ଫିଙ୍ଗିକି ଉଠିବେ ।

ସତ୍ତୁ—ନାଇଁମ, ଏବେ ବୃନ୍ଦାବନେ ହରିନାମ ନଉଛନ୍ତି ! ସେ କାଲ କଥା କଣ ଆଉ ମନେ ଥିବ ?

ଦହେଁ ଯାଇ ଦରିଯା ମକଦ୍ଦମଙ୍କୁ ଓଳକି ହେଲେ । 'ସର୍ବାରିଷ୍ଟ ଶାନ୍ତିର୍ଭବତୁ, ଶ୍ରୀକୃଷ୍ଣ ଚରଣାରବିନ୍ଦେ ଭକ୍ତିରସ୍ତୁ ।'

'କିଏ ?'

'ମୁଁ ମିଲୁ ?'

ତାପରେ ମୁହଁଟା ବିକୃତ ହେଇ ଉଠିଲା, ସେ ମନେ ମନେ କହିଲେ—କଣ ? ଓଳକି ? ଯେଡ଼କି ହେଇ ଥା, ସେଡ଼କି ! ମାନେ

Digitized by srujanika@gmail.com

ତୋର ଆଉ ବଡ଼ତ ନ ହଉ । ପୁଣି କହିଲେ—'ଅଷ୍ଟକଳା ପ୍ରାପ୍ତି ହଉ'—ମାନେ ଆଠୋଟି ବଡ଼ ବଡ଼ ଘାଟି ପଡ଼ୁ । ଦୀର୍ଘ ଆଶୀର୍ବାଦ ପଛେ ପଛେ ମକଦ୍ଦମଙ୍କ ମନକୁ ଏମିତି କେତେ ଅଭିଶାପ ଆସିଗଲା । କିନ୍ତୁ ପଦାକୁ ଫୁଟି ବାହାରିଲା ନାହିଁ ।

ମିଛୁ ଜାଣେ—ମକଦ୍ଦମଙ୍କ କଲ୍ୟାଣଟା ଖାଲି ମୁହଁରେ । ତା ପଛରେ ତାଙ୍କ ଅନ୍ତର ନାହିଁ । ଯାହାର କିଛି ଧର୍ମଜ୍ଞାନ ନାହିଁ କି ତପସ୍ୟାବଳ ନାହିଁ, ତାର ଆଶୀର୍ବାଦ ବା ଅଭିଶାପ ମୂଲ୍ୟହୀନ । ଯେମିତି ଗରମ ପାଣିରେ ଘର ପୋଡ଼େନାହିଁ, ସେମିତି ମନ୍ଦ ଲୋକର ଅଭିଶାପ କିଛି କାଟୁ କରେନାହିଁ ।

ମାଉଁସ ମେଞ୍ଚାରୁ ଗୋଟିଏ କ୍ଷୀଣ ସ୍ୱର ବାହାରିଲା—ଆଉ କଣ ଅଛି ଯେ ଆସିଲ !

ମିଛୁ—କଣ କେବେ ହୋଇଥିଲା, ସବୁ ଭୁଲିଗଲିଣି ।

ବଉଜ—ମାଡ଼ ଯେ ଦେଇଥାଏ, ସେ ଭୁଲିଯାଏ । ଯେ ଖାଇଥାଏ ?

ମିଛୁ—ଆପଣ ମୋ ଦେହ ଛୁଇଁ କହନ୍ତୁ—ଦେହରେ ଟିପ ଦବା ତ ଦୂରର କଥା, କେବେ ପଦେ ହୁଡ଼ିଛି ? ତା ଯଦି କରିଥିବି, ହେ ଭଗବାନ୍, ମୋ ହାତଗୋଡ଼ ରହିଯିବ !

ବଉଜ—ହାତ ମାଡ଼ ଠଉଁ ଭାତମାଡ଼ ବେଶୀ କାଟେ !

ମିଛୁ—ଭାତରେ କେମିତି ମରାଯାଏ, ସେ କଥା ମୋଠାରୁ ଆପଣ ବେଶୀ ଜାଣନ୍ତି । ମୁଁ କାହାକୁ ହାତରେ ମାରିଲେ ମାରିଥିବି, କିନ୍ତୁ କାହାକୁ ଭାତରେ ମାରିବା ଦୁର୍ଯୋଗ ମୋ ଜୀବନରେ ଥରେ ବି ଘଟିନାହିଁ । ମୁଁ ଯଦି ସତରେ କାହା ଭାତହାଣ୍ଡି ଭାଂଗିଥିବି, ମୋ ଭାତହାଣ୍ଡି ଦଇବ ଭାଂଗିବ, ନଇଲେ......

ବଉଜ—ଥାଉ, ସେ କଥା ପରେ; ତମ ସମୁଦି ପରି ଉବାବି ଗାଁରୁ ଆସିଛନ୍ତି ! ଆମ କଥାଭାଷା ଢ଼ଂଗ ଦେଖି ସେ କଣ ବିଗୁଡ଼ିବେ ?

Digitized by srujanika@gmail.com

ଆରେ, ତାଙ୍କୁ ଓଳଗଲେ ଛୁଡ଼ା କରେଇଚ କୋଉ ପସନ୍ଦରେ ?

ମୁଗିଣା ଆଣରେ, ବଟୁଆ, ପାନବଟା ।

ଆପଣା ରୁଚିମୁତାବକ ପାନ ଖଣ୍ଡେ ଭାଂଗି ଖାଉଁ ଖାଉଁ ସନ୍ତୁ ପଚ୍ଛରିଲେ—ଆପଣଙ୍କ ଦେହ ପା କେମିତି ରହୁଚି ? ଏ ବୁଢ଼ା ଦିନେ ତ ଯେତେ କଷ୍ଟ ରୋଗ ଯନ୍ତ୍ରଣା !

ମକଦ୍ଦମେ କୋହରେ କାନ୍ଧ ପକାଇ କହିଲେ—ମତେ କଣ ଆଉ ତିନ ପୁରେ ରଖିଛନ୍ତି ? ଦେଖୁଛ ତ ମୋ ଦଶା, ଆଉ ପଚ୍ଛରୁଚ କଣ ?

ମିଚ୍ଛୁ—ମକଦ୍ଦମେ, ଏବେ ତୁମେ ବୁଢ଼ାକୁ ମୁଁ ବୁଢ଼ା । ତୁମ ଧନଦଉଲତ କଣ ମୁଁ ନେଇ ଘରେ ପୂରେଇଚି ? ମୋର ଯୋଉ ଗୂଳ-କୁଢ଼ଆକୁ ସେଇ ଗୂଳକୁଢ଼ଆ, କାନ୍ଥମାନ ଫାଟି ଆଁ କରିଚି ।

ଦରଯ—ତମେ ନିଜେ ନ ଖାଇଲେ ନାଇଁ, ଖୋଇଚ ନା ନାହିଁ ? ମୋ ଘର ଉଜୁଡ଼େଇ ଦେଇଚ ନା ନାହିଁ ? ଲୋକଙ୍କୁ ମତେଇଲା କିଏ ?

ମିଚ୍ଛୁ—ବର୍ଷା କାଳ ହେଲେ ହୁଙ୍କା ଗାତରୁ ହୁ-ହୁ ହୋଇ ଝିଂଡ଼ପୋକ ବାହାରନ୍ତି । ତାଙ୍କୁ ମତାଇବ କାହିଁକି କିଏ ? ସେମିତି ଗାନ୍ଧିଯୁଗ ହବାରୁ ଲୋକେ ଆପେ ମାତି ଉଠିଲେ ।

ସନ୍ତୁ—ବିଅଙ୍କ ଚଳନ୍ତୀ ପ୍ରତିମା ରଜାଙ୍କୁ ଆମେ ଦୂରରୁ ଦଣ୍ଡ-ପ୍ରଣାମ କରି ଆସୁଥିଲୁ । କାଳ ବିପର୍ଯ୍ୟତ ହେଲା । ସେ ଆପେ ସିଂହାସନରୁ ଖସି ଆସିଲେ । ତାଙ୍କ ପଛେ ପଛେ ଖସିଲେ ଜମିଦାର, ମକଦ୍ଦମ·····

ଯୋଉ ରଜା ସିଂହଦ୍ୱାରଜାକୁ ଆସୁ ନ ଆସୁଣୁ ଶୁଭ ହୁଳହୁଳି ପଡ଼ୁଥିଲା, ଶଙ୍ଖମହୁରୀ ବାଜି ଉଠୁଥିଲା, ଲୋକେ କେତେ ଅନୁସରଣରେ ଗୁହାରିଆ ପଡ଼ୁଥିଲେ, ଯେ ହାଇକ ଆଉ ଘୋଡ଼ାହାତି ସାଜରେ ପଟୁଆରରେ ବାହାରୁଥିଲେ, ବର୍ଷକୁ ବର୍ଷ ଆଡ଼ମ୍ବରରେ ଯାହାଙ୍କ

Digitized by srujanika@gmail.com

ଦରବାରରେ କେତେ ଉପାଧି ଆଉ ଧନରତ୍ନ ବିତରଣ ହଉଥିଲା, ଦେଖ ଏବେ ଆମର ପର ଜଣେ ଖଡ଼୍ଂଖଡ଼ା । ଗଲା ଅଇଲାବେଳେ ଲୋକେ ସନମାନରେ ବାଟ ଛାଡ଼ ଦଉନାହାନ୍ତି; ଗୋଟେ ଦଣ୍ଡବତି ବି ହଉ ନାହାନ୍ତି ।

ମିଛୁ—ସବୁ ସମୟ କରୁଚ, ଏଥିକ ମଣିଷର ଗୃବା କଣ ? ଏଇ ସମୟ ରାଜଗାଦିରେ ବସେଇଥିଲା, ସେହି ପୁଣି ରାଜମୁକୁଟ କାଢିନେଲା, ରାଜେନ୍ଦ୍ରାସନରେ ଯେ ବସେଇ ଥିଲା, ସେଇ ଦାଣ୍ଡର ଫକୀର କଲା ।

ଦ୍ୱିରପ—ଆମର ଏଠି କଛୁ ହେଇ ନ ଥାନ୍ତା । ମିଛୁ ତାଙ୍କ ମୁଣ୍ଡ ବିଗାଡ଼ ଦେଲା । ସେଇ ପଢ଼ିଲେ ତାଙ୍କୁ ହାତକାମୁଡ଼ା ଶିଖେଇଲା । ତାପରେ ଲୋକେ ଯଦି କାମୁଡ଼ ଗୋଡ଼େଇଲେ, ଏଥିରେ ଆଶ୍ଚର୍ଯ୍ୟ ହବାର କଣ ଅଛୁ ?

ଆଗେ ବଡ଼ ଭୋର୍‌ରୁ ଉଠି ଲୋକେ କାମକୁ ଆସୁଥିଲେ, ମହାପ୍ରଭୁ ମୁଣ୍ଡ ତଳକୁ ନ ଗଡ଼ିବା ପର୍ଯ୍ୟନ୍ତ କେହି ବିଲରୁ ଫେରୁ ନ ଥିଲେ । ଏବେ ଯେଡ଼କ ଠାପୁଆ, ସେଡ଼କ ଅମାନଆଁ ।

ପରର ଅନଷ୍ଟ କରିବା ଏବେ ଗୋଟେ ଢଙ୍ଗ ହେଇଚ । ଉଇ ପରି ସବୁଥିରେ ଲାଗି ଯାଉଛନ୍ତି, ଘୂଣ ପରି ଝୁଣୁଝୁଣା କରି ପକଉଛନ୍ତି ।

ଆଗେ ଭାରି ନିମକସଚା ଥିଲେ । ବିଲ ବାଛୁଗଲେ ବାଳୁଙ୍ଗାତକ ଓପାଡ଼ ବିଲରେ ବିଣ୍ଡା ମାରି ଦଉଥିଲେ, ସାର ହବ ବୋଲି ।

ଏବେ ମନେ ମନେ ଜଳୁଛନ୍ତି । ବୋପାଅଜାଙ୍କର ସତେ ଯେମିତି କଏ ଶହେ ପରୃଶ ଖାଇ ଯାଇଚ ! ଶହ ସାଧୁଛନ୍ତି ପଦେ ପଦେ । ଏବେ ବିଲରୁ ଧାନତକ ଓପାଡ଼ ବିଣ୍ଡା ମାରି ଦଉଛନ୍ତି । ବାହାରିଲା ବେଳକୁ ଖାଲି ବଗପକ୍ଷୀ ପରି ଧଳା କେଣ୍ଡା—ବାଳୁଙ୍ଗା ବାଡ଼ ।

ଏ ଅଦଉତ ପରେ ଦୈବାତ୍ କୋଉଥିରେ ଯଦି କଛୁ ଧାନ ରହିଯାଏ, ପାଚଲାକ୍ଷଣି ତାକୁ ଟେଣ୍ଟା, ଶାମୁକାରେ ଖୁଣ୍ଟି ନେଇ ଚେଙ୍ଗେଇଗୁଉଳ କୁଟି ଖାନ୍ତି ।

Digitized by srujanika@gmail.com

ବାଲିରେ ଖାଲି ଖୁଣ୍ଟା ଠିଆ । ହେ ବାରଞ୍ଚିନାରାୟଣ, ମୋ ଧନ ଯେ ଖାଉଚ, ତୁ ଯଦି ସତରେ ଅଛୁ, ସୃଷ୍ଟି ଆତଯାତ କରୁଚୁ, ତୁ ବୁଝିବୁ; ଯାଙ୍କ କୁଳରେ ଟୋପେ ପାଣି ଦବାକୁ କେହି ରହିବେ ନାଇଁ । ଉହିରେ ବାଲୁଆ ବଢ଼ଉଇଁବେ ।

ମିଛୁ—ସେଗୁଡ଼ାକ ମାଟିର କଆନାଡ଼ । ଏ ଅପଣାଇପରେ ତାଙ୍କର କିଛି ହବନାଇଁ, ମକଦ୍ଦମ । ସେଗୁଡ଼ାକ ହେଁସକୁ ହେଁସ ଛୁଆ ଜନମ କରୁଥିବେ । ସେଥିଲାଗି ତାଙ୍କୁ ଷଠୀପୂଜା କରିବାକୁ ହୁଏନାହିଁ କି କୋଉଠି ମୁଣ୍ଡିଆଟାଏ ମାରିବାକୁ ବି ପଡ଼େନାହିଁ । ଘାସ ପରି ଉଠୁଥାନ୍ତି ବଢ଼ୁଥାନ୍ତି ଯେତେ ଯାହାକଲେ ମରନ୍ତି ନାହିଁ । ଠିଆ ହେଲି ମାନେ ନିଜ ଗୋଡ଼ରେ ଚାଲନ୍ତି । ତାଙ୍କୁ ନ ଧରିଲେ ଓଲଟି ଆମେ ଚଳିପାରୁ ନାହିଁ । ଆମେ ନ ଚଳାଇଲେ ସେ କୁଆଡ଼ୁ ହେଲେ ଚଳିଯିବେ ।

ଦାଶରଥ—ସତ କଥା କହିଲୁ ମିଛୁ, ଏ ଯୁଗକୁ ସବୁ ବିପରୀତ । କେତେ ଠାକୁରଙ୍କୁ ଡାକୁଚ, ମହାଦେବଙ୍କୁ କେତେ ପୂଜା ଦଉଚ, ବର୍ଷକୁ ବର୍ଷ ଯମ ମା ସାତ ଭଉଣୀଙ୍କ ପାଖେ କଳା ଧଳା ଯାଉଁଳି ବୋଦା ବଳି ପକାଉଚ । କିଛି ହଉନାଇଁ ।

ଓଲଟି ସବୁ ମୋ'ର ଖରାପ ହଉଚ । ମୋ ମନକୁ ଚାହିଁ ଦୈବ ଯାହା ଧନ ଦେଲା, ଜନ ବୋଇଲେ ଦେଲା ମାତ୍ର ପୁଅଟିଏ । ଯଥାକାଳେ ତାକୁ ବିଭା ଦେଲି, ଦୁଇଟି ନାତି ମୁହଁ ଦେଖିଲି, ଏ ମୋ ଭାଗ୍ୟ ।

ନ' ବର୍ଷରେ ବଡ଼ଟିକି ବ୍ରତ କଲି । ପାଲିଙ୍କି ଚଢ଼ି ଶୋଭାଯାତ୍ରାରେ ଗଲା, ସନମାନରେ ଫୁଲସଭା ହେଲା, ତା ଶ୍ଳୋକ ଶୁଣି ମହାଜନେ ଧନ୍ୟ ଧନ୍ୟ କଲେ ।

ପୁରୋହିତେ ଆଶୀର୍ବାଦ କଲେ । ଗଛରେ ଚଢ଼ିବାକୁ, ପାଣିରେ ବୁଡ଼ିବାକୁ ବ୍ରହ୍ମ ବାଳକକୁ ମନା । ସେ ଅମାନିଆଁ ପିଲା ହଉଣୁ ସେଇଆ କଲା ।

Digitized by srujanika@gmail.com

ବଡ଼ ହବାର ବର୍ଷେ ପୂରିନାଇଁ, ପଡ଼ୋଶୀ ପୋଖରୀକି ଗାଧୋଇ ଗଲା । ଲୁଗାପଟା ପାଲଟି କୂଳରେ ଠିଆ ହେଇଛି, ଏତିକିବେଳେ ତା ବନା କକେଇ ଗାଧୋଇ ଆସିଲା । ତା ସାଂଗେ ଲଗେଇଲା—ମତେ ପହଁରା ଶିଖେଇ ଦେ । ଖରାଦିନ । ଶୁଖିଲା ଗଡ଼ିଆ । ପୁରୁଷେ ପାଣି ହବ କି ନାଇଁ । କକେଇ କାନ୍ଧରେ ଲଦି ହେଇ ସେ ପୋଖରୀରେ ପଶିଲା । ଠିକ୍ ମଝିରେ ଆକେତା ହେଲାରୁ କକେଇ ତୋଟିକି ଜାବୁଡ଼ି ଧଇଲା । କକେଇର ଅଠାଠିକ୍ ଅବସ୍ଥା ହେଲାରୁ ସେ ପୁତୁରା ହାତକୁ ଜବରଦସ୍ତ ଛଡ଼ାଇ ଦେଲା । ଟୋକାଟା ଠୁବ୍ କରି ବୁଡ଼ିଗଲା ଗଡ଼ିଆ ମଝି କୂଅ ଭିତରେ । କକେଇ ତାକୁ ଦରାଣ୍ଡି ନ ପାଇ ବିକଳ ହେଇ ଡାକ ପକେଇଲା । ଘରଛପରାଳୀ ପିଡ଼ାରୁ ଡେଇଁ ଧାଇଁଲେ । ପୋଖରୀ ଘାଣ୍ଟି ପକାଇଲେ । ଶେଷକୁ ଜଣେ କୂଅ ଭିତରୁ ପିଲାଟିକି ଘେନି ଉଠିଲା । ଯେତେ ହେପାଜତ କଲେ ବି ସେ ଆଉ ଆଖି ଖୋଲିଲା ନାହିଁ ।

ହଇଓ, କାଇଁକି ଏ ଦଶା ମୋର ଘଟିଲା ? ମୁଁ କାହା ପିଲାକୁ ବୁଡ଼େଇ ମାରିଥିଲି ? (ସତୁ ମନେ ମନେ—ଆର ଜନ୍ମ ବା ଏ ଜନ୍ମ ହଉ, ଗୁରୁତର ପାପ କିଛିମ୍ପ କିଛି ହେଇଥିବ । ନଇଲେ ଏଡ଼େ ପ୍ରାୟଶ୍ଚିତ୍ତ କରିବାକୁ ପଡ଼ନ୍ତା କାହିଁକି ?) ତାପରେ ମୁହଁ ଖୋଲି କହିଲା—ଏ ବିପତ୍ତିରୁ ବଳି ବିପତ୍ତି ନାଇଁ । ହେ ଭଗବାନ୍, ମୋର ଚଣ୍ଡାଳକୁ ବି ଏ ବିପତ୍ତି ନ ପଡ଼ୁ ।

କାହାର କିଛି ଅନିଷ୍ଟ କଲେ ଯେ ଏମିତି ଶୂନ୍ୟ ଚଡ଼କ ପଡ଼ିବ, ତା କିର୍ଭରିଭବେ କହିହବ ନାହିଁ ।

ମିଛୁ—ଯୁଦ୍ଧ ହୁଏ । ମହାମାରୀ ଆସେ । ଧାଇଜା ଲାଗେ । ବିପ୍ଲାତୁ ହିଁ ବିପ୍ଲାତ୍ । ଲୋକେ କାହାର ଅହିତ ନ କରିଥିଲେ ବି ଅକାଳେ ମରନ୍ତି ।

ଦ୍ୱିରଜ—ଏବେ ଏ ବିଟକିରିଟିକୁ (ସାନପୁଅ) ଦେଖୁଚ ? ଏ ଯେଡ଼କି ସେଡ଼କି, ବଢ଼ୁନାଇଁ । ୟାକୁ ଆମେ ଆଉ ଆକଟ କରୁ-

Digitized by srujanika@gmail.com

ନାଇଁ, କାଲେ ପୁରହରୀ ମାଆ ମନ କଷ୍ଟ କରିବ ! ଯାହା ଚଳେ କଲେ କରୁ, ପାଠ ପଢ଼ୁନ ପଢ଼ୁ, ବଞ୍ଚି ରହୁ, କୁଳକୁ କାରେଣି ହଉ ।

ସତ୍ତୁବାବୁ, ତମେ ବୁଝିପାରିବ, ମିଛୁଠା ବୁଝି ବୁଝୁ ନାଇଁ—ଧନସମ୍ପତ୍ତି କଣ ଏମିତି ହୋଇଯାଏ ? ବହୁ ଦୁଃଖକଷ୍ଟ ସହିବାକୁ ପଡ଼େ । ସେଥିରେ କିଛି ଅନ୍ୟାୟ କି ପାପ ହୁଏନାହିଁ, ସଂସାରର କୋଉ ଧର୍ମୀ ଲୋକ ଛାତିରେ ହାତ ଦେଇ କହିପାରିବ ?

ସମ୍ପତ୍ତି କରିଥିଲି ମୁଁ । ମୋ ଦୁଃଖକଷ୍ଟର ସୁଫଳ ଭୋଗ କରୁ-ଛନ୍ତି ମୋ ଭାଇମାନେ । ସବୁ ଅଭିଶାପ ବା ପାପର ଫଳ ଭୋଗ କରିବାକୁ ମତେ ଛାଡ଼ି ଦେଇଛନ୍ତି । ପ୍ରାୟଶ୍ଚିତ୍ତ କରି କରି ମୋ ଦିନ ସରୁନାହିଁ ।

ମୋ ଦୁଃଖରେ କାହାର ମୁଣ୍ଡ ବଥଉନାଇଁ । ମୋ ଲୁହକୁ କେହି ଆଖିରେ ନଉନାଇଁ । ମୋ ବେଦନା ଭାର ବୋହିବାକୁ କେହି ଛାତି ପତଉ ନାଇଁ । ଭାଇଆ ଓଲଟି ସୁକଠ ଦେଖୁଛନ୍ତି !

ଦିନକର କଥା ଶୁଣୁନା ? ସାନଭାଇର ବଡ଼ ପୁଅ ବଡ଼ ଭାଇନାଙ୍କ ପୋଷିଆଁ ପୁଅ ହେଇଚ । ଏବେ ଭାରି ମାମଲତକାର । ଗୋଟେ ମଟରସାଇକଲ ଚଢ଼ି ମୋ ଦୁଆରେ ପହଞ୍ଚିଗଲା—ଡାହାଣ ହାତରେ ଘଣ୍ଟା ବନ୍ଧା, ଓଠରେ ସିଗାରେଟ୍ । କହିଲା—ଦଦେଇ, ତମର ଏ ଖଳାବାଡ଼, ଘର, ବାଡ଼ିର ପୋଖରୀ ସବୁ ମୋ ନାଆଁରେ ଅଛି । ତମେ ଏ ଘର ଖାଲିକରି ଅନ୍ୟତ୍ର ଉଠିଯାଅ । ମୁଁ ଏଠି କୋଠା ତୋଳିବି ।

ଚମକି ପଡ଼ି କହିଲି—ଜମିବାଡ଼ି କାଗଜପତ୍ର ମାମଲତ ବୁଝି ବୁଝି ମୋ ଦିହକୁ ଗଲା । ଏତେ ବଡ଼ ଭୁଲ୍‌ଟାଏ ହୋଇଗଲା କିପରି ? ନା ଦାଇବ କରେଇଲା, ଯେ ମରେଇଲା ମୋ ନାତିକି ! ମକଦ୍ଦମେ ଲୁହ ଗଡ଼େଇ ଆସୁଥିବା ବେଳେ ସେ ସମୁଦ୍ର ଦଣ୍ଡବତ ହେଇ ବିଦାୟ ନେଲେ ।

Digitized by srujanika@gmail.com

ମହୁଡ଼ମର 'ଜାଗା ଘରେ' ଗୋଟାପଣେ ସିନ୍ଦୂରବୋଳା ମହାବୀର ହନୁମାନ୍, ଗ୍ରାମର ଦୈହିକ ଶକ୍ତିସାଧନାର ଦେବତା । ଏବେ କୁସ୍ତି କସରତ୍, ମଲ୍ଲ ଯୁଦ୍ଧ, ମୁଦ୍‌ଗର ବା ଖଣ୍ଡାବୁଲା, ଓଲଟା ଶୂନ୍ୟମରା ନଥିଲେ ବି ଠାକୁରେ ଅଛନ୍ତି, ଅବଶ୍ୟ ଅପାଣିଆ, ଘର କଣରେ ପଡ଼ିଚି ଗୋଟେ 'ଅଛପର ପଖଉଜ, ଗାଁରେ ଓଡ଼ିଶୀ ସଙ୍ଗୀତର ଦୁର୍ଦ୍ଦଶାର ସୂଚକ ।

ଏ ସମୁଦି ଗାଁ । ସେ ମୁଣ୍ଡ ଦେଖିଯିବା ଆଗରୁ ହନୁମାନଙ୍କ ପିଣ୍ଡାରେ ଟିକିଏ ଥାକି ମାଇଲେ, ପାଖରେ ଉଇ ହୁଙ୍କାଟାଏ । ଭିନି ହାତ ଉଠିଚି, ତା ଉପରେ ଏଠିସେଠି ଗାତ । ମିଛୁ ପାଟି କଲା— ସମୁଦି, ଗୁଡ଼ ବସ, ସାପ ଥିବ ।

ଟିକିଏ କରଛଡ଼ା ଦେଇ ବସିଲା ପରେ ସତ୍ତୁ କହିଲେ— ଯେତେ ସଫାସୁତୁରା ଥିବା ଭାବିଥିଲି, ସେତେ ନାହିଁ ତ ! ଏଠି ସେଠି ଅଳିଆ ମେଞ୍ଚା, ଖତଗଦା, ନଳା ପାଣି । ରାସ୍ତା ଧାର, ପୋଖରୀ କୂଳ ଲୋକେ ବୁଡ଼େଇଛନ୍ତି !

ଖାଲଖମା ବୋର୍‌ଖାଞ୍ଜି ଭରା, ମଧୁବନ ପୋଖରୀର କଳକଟୀ ଦଳରେ ମାଳ ହସର ଜୁଆର ଉଠୁଚି ।

ମିଛୁ—ଏଥିଲାଗି ତ ଯେତେ ରୋଗ ଏ ଗାଁରେ ପଶିଲେ ଆଉ ଗୁଡ଼ ପାଉନାହିଁ ।

ବାହାର ଏମିତି ହେଲେ ଭିତରଟା ସଫା ରହିବ କୋଉଠି ? ଖଟୁଆ, ମିଛୁଆ, ପରଘରବୁଡ଼ା ଟାଉଟର ଭର୍ତ୍ତି ହୋଇ ଗାଁଟା ଗଧିଆ ଶିଆଳ ଭରା ଜଙ୍ଗଲ ପରି ହେଇଚି । ଦର ପାଠୁଆ, ସବ୍‌ଜାନ୍ତା ଦଳଙ୍କୁ ଦଳ, ଦେହ ଶ୍ରମ ପ୍ରତି ଘୃଣା; ପ୍ୟାଣ୍ଟ୍‌ରୁ ଇସ୍ତ୍ରୀ ଖସୁନାହିଁ । ପକେଟରୁ ରୁମାଲ୍ ବାହାର କରି ଘଡ଼ିକି ଘଡ଼ି ମୁହଁ ପୋଛୁ ପକାଉଛନ୍ତି । ଗୃହ ଉଜୁଡ଼ୁଚି, ବାସ ଉଲୁରିଲାଣି, ସେଥି ପ୍ରତି ନଘା ନାହିଁ । ପିଅନ୍ କାମଟିଏ ପାଇଗଲେ କୃତାର୍ଥ ।

Digitized by srujanika@gmail.com

ତା ଆଗରୁ ଯେତେ ଅସାମାଜିକ କାର୍ଯ୍ୟ ଗ୍ରାମାଞ୍ଚଳରେ ହୁଏ, ଊଣା ଅଧିକେ ସେଥିରେ ସେମାନଙ୍କର ଭାଗ ଥାଏ । ଏଥି ମଧ୍ୟରୁ ଚୋର, ପକେଟମାରୁ, ଡାକୁ, ମଣିଷମାରୁ ବି ବାହାରନ୍ତି ।

ସତ୍ତୁ—ଯାନିଯାତ୍ରା, ପୁଣ୍ୟ ପର୍ବ ସବୁ ଆଗ ପରି ହଉଚି ?

ମିଲୁ—ଆଗ ପରି ନ ହେଲେ ଆଶ୍ଚର୍ଯ୍ୟ ହବାର କିଛି ନାହିଁ । ଏକା କଥା ସମାନ ଭାବରେ ସବୁ କାଳେ ଚାଲିବ, ଏ କଥା କୁହାଯାଇ ନ ପାରେ ।

ପୁଣ୍ୟ ପର୍ବ ଏବେ ନାମକୁ ମାତ୍ର ହୁଏ । ସେଥିରେ ଆନ୍ତରିକତା ନାହିଁ; ଯାନଯାତ୍ରାରେ ବି ପ୍ରାଣ ନାହିଁ ।

ଦେବ ବିଗ୍ରହ ଚୋରି ଗ୍ରାମେ ଗ୍ରାମେ; ଧାତୁ ମୂଲ୍ୟରେ ଦିଅଙ୍କ ମୂଲ୍ୟର କଳନା ।

ଦେଉଳ ଶିଉଳି ବା ଗଛବୃଛରେ ଶାଗୁଆ । ଠାକୁରଙ୍କ ଧନ ନିର୍ବିକାରରେ ଲୋକେ ଚକ୍ଟୁ କରି ଦଉଛନ୍ତି; ଏଥିରେ କିଛି କ୍ଷତି ଘଟିବ—ଏ ଶଙ୍କା ଆଉ ନାହିଁ ।

କଳି ଯୁଗରେ ଠାକୁରେ ପଥର ପାଲଟିଛନ୍ତି, ହାନି ଯାହା ଘଟିବାର ଘଟୁଛି, ଦୁଷ୍ଟ ଲୋକ ଯେତେ ଉଚ୍ଛୁଳିବାର ଉଚ୍ଛୁଳୁଛନ୍ତି । ସମ୍ପତ୍ତିନାଶ ରୋକିବାର, ଦୁଷ୍ଟଙ୍କୁ ଶାସ୍ତି ଦେବାର ଶକ୍ତି ଗାଁ ଠାକୁରଙ୍କର ନାହିଁ । ତା ଥିଲେ ଏତେ ସବାଖିଆ, ନଆଁଗିଳା ବାହାରନ୍ତେ କୁଆଡ଼ୁ ? ସନ୍ଥମାନେ ଏତେ ହନ୍ତସନ୍ତ ବା ହୁଅନ୍ତେ କାହିଁକି ?

ଗାଁରେ ନୀତି ବୋଲି ଯାହା ଶୁଣା ଯାଉଚି, ତା ମାଷ୍ଟ୍ରଙ୍କ ଭୁଣ୍ଡିରେ, ରାଜନୀତି ଶଠନୀତି, ପ୍ରୀତି କାର୍ଯ୍ୟଘେନା । ଧର୍ମ କର୍ମ୍ମ୍, ଯୌତୁକଦିଆ କନ୍ୟା ପିତାର ପ୍ରାଣଘେନା, ବର ପିତାର ଏକ କୌତୁକ ଖେଳ । ବର ତାଙ୍କ ପଛରେ ଲୁଚୁଛି ନାଁ । ଗୋଡ଼ ଦିଠା ଦିଶୁଚି !

Digitized by srujanika@gmail.com

ଏ ଯୁଗ ମଧ୍ୟବିତ୍ତ ଦୃଷ୍ଟିରେ ମୂଲଆ ଶୋଷକ । ପ୍ରକୃତରେ ମୂଲଆ ଏ ଯୁଗରେ ସୁଖୀ; କାରଣ ତା ଘରେ ଅର୍ଥାଭାବ ନାହିଁ । ସମସ୍ତେ ରୋଜଗାରୀ । ଅତି ବେଶୀ ଝଡ଼, ଝଡ଼ି ବା ବର୍ଷା ନ ହେଲେ ଏ ଯୁଗର ମୂଲଆ ଓପାସେ ଶୁଏନାହିଁ । ଧୋବ ଲୁଗା, କାମିଜ ପିନ୍ଧିବାକୁ କେତେକ ସାହସ କଲେଣି ।

ଏବେ ଢିଙ୍କି ନଘୋଡ଼ ନଦରେ ଶୋଇଛି, ଗଣ୍ଡା ପୁନେଇଁକି ଚୂନାକୁଟାବେଳେ ତା ନିଦ ଭାଙ୍ଗେ । ତେଲସାହିରୁ ଘଣାଗଣ୍ଡି ଉଠିଗଲାଣି, ତନ୍ତୀସାହିରୁ ତନ୍ତ, କେତେ କୁମ୍ଭାର ଘରୁ ଚକ । କୁମ୍ଭାର ଘର ବୋହୂ ଏବେ ଝାଟିକି ନ ଗଲେ ମାଟିକି ଯାଉନାହାନ୍ତି । ଅରମା ଜଙ୍ଗଲ ଲୁପ୍ତ, ଝାଟି ଆଉ ମିଳିବ କାହୁଁ ? ଏବ ବୋହୂ ହାଣ୍ଡିଆଟିକା ବ୍ୟବହାର ଜାଣୁ ନାହାନ୍ତି, ଡେକଚି ଆଉ ଟିଣକରେଇ କାରବାର ଘରେ ଘରେ । କୁମ୍ଭାରଙ୍କ ଭିତରୁ କେହି ଗୃହ କରୁଛି, କିଏ ଇଟା ବା ଟାଇଲ୍ ଗଢ଼ୁଛି, କିଏ ବା କିଛି କରି ନ ପାରି ଶଶୁର ଘରୁ 'କିଛି' ମୂଳଧନ ଯୋଗାଡ଼ କରି ହାଣ୍ଡି ବେପାର କରୁଛି ।

ବଢ଼େଇ ଲଙ୍ଗଳଗଢ଼ା ଅଖିଫୁଟାଯୁଗ ମୁଠି ଅନୁକୂଳବେଳେ, କମାର ବ ଶାଳ କରେ ସେଇ ଲଙ୍ଗଳକୁ ଗାର କରିବା ଲାଗି । ନ ହେଲେ କାଠ ଲଙ୍ଗଳ ଲୁପ୍ତ; ଟ୍ରାକ୍ଟର ଚଳାଇଲାବେଳେ ହଳିଆ ଗୀତବୋଲା ହାସ୍ୟକର ।

ଗାଁର କୁଟୀର ଶିଳ୍ପ ଲୋପ ପାଇଛି । ବଢ଼େଇର ହଳଦିକାଠୁଆ, ଲୁଣିକାଠୁଆ, କୁମ୍ଭାରର ତେଲଘଡ଼ି, ମାଟିଘୋଡ଼ା, ତୁଳସୀଚଉରା, ସାନ୍ଧ, ତେଲୁଣି ଦେଖିବାକୁ ମିଳୁନାହିଁ । ଗାଁ ଲୁଗାପଟା, ଏମିତିକ ଲୁହା କଣ୍ଟାଟିଏ ପାଇଁ ବଜାର ଉପରେ ନିର୍ଭରଶୀଳ । କଳ କଟାଦଉଡ଼ି, ବୋଲାଦଉଡ଼ି ଅପେକ୍ଷା ଶସ୍ତା ପଡୁଛି । ଗାଁ ଆଉ ସ୍ୱୟଂ-ସମ୍ପୂର୍ଣ୍ଣ ନୁହେଁ, ସେ ବିକୁଛି ଅଳ୍ପ, କିଣୁଛି ବେଶୀ, ବିକୁଛି ଶସ୍ତା, କିଣୁଛି ମହରଗରେ । ଦାରିଦ୍ର୍ୟ ବଢ଼ିଗଲାଣି, ନିଜ ଦୁଃଖ ସେ

Digitized by srujanika@gmail.com

ଠିକ୍ ଭାବେ ଦେଶ ଆଗରେ ଥୋଇପାରୁ ନାହାଁ, ଗ୍ରାମେ ଗ୍ରାମେ ଅସନ୍ତୋଷର ଗୁଞ୍ଜନ । ଶିଳ୍ପପତି ସରକାରଙ୍କ ଚେହ୍ଲା ପୁଅ ହୋଇଚ ।

ଉର ଉର ସହରର ବ୍ୟବସାୟୀ ଅପକର୍ମ କରେ । ଗାଁରେ ସେ ନଧଡ଼କ; ମନଇଚ୍ଛା ଅପମିଶ୍ରଣ କରେ, ଓଜନରେ ଠକେ ।

ପୋକର ସମାଜ ଏବେ ଅଚଳନ୍ତୀ ଟଙ୍କା; ତେଣୁ ମନଇଚ୍ଛା ଜୁଲମ୍, ଜୁଆଚୋରି । ଖାମଖିଆଲି, ଦୁନଆଁ ପ୍ରତି ବେଖାତିରି ଭାବ ସବୁଆଡ଼େ ।

ଗଛବୃଛ ପ୍ରତି ଆଦର, ପଶୁପକ୍ଷୀ ପ୍ରତି ସ୍ନେହ, ସାଇ ଓ ଗାଁ । ପ୍ରତି ପ୍ରୀତି ଏବେ ଆଉ କାହାଁ ? ନେତା ଗାଁରେ ପଶି ଭୋଟ ପାଇଁ ଜାତିଆଣ ଭାବ ଜାଆଁଉଛନ୍ତି, ଗୋଷ୍ଠୀ ଗୋଷ୍ଠୀ, ଗାଁ ଗାଁ ଭିତରେ କଳି ଟିକଏ ଟିକଏ କଥାରେ ଲଗି ଯାଉଚ ।

ଏମିତି କଥାବାର୍ତ୍ତା ହଉଁ ହଉଁ ଦ ସମୁଦ୍ର ଉଠିଲେ; ସୁଉ କରି ପବନ ବୋହିଗଲା । ପ୍ରକୃତି ଯେପରି କ ଗୋଟେ ହାଇ ମାରିଲା, ଅଳସ ଭାଙ୍ଗିଲା ବେଳେ ।

ଉଡ଼ିଗଲେ ଦଳେ କୁଆ ଭୋଟ୍ ପ୍ରହୂରକ ଦଳଙ୍କ ପରି ଖୁବ୍ କୋଳାହଳ କରି; ଏଥିରେ ବିରକ୍ତି ପ୍ରକାଶ କଲା କୁମ୍ଭାଟୁଆ ଜାମୁଗଛ ପତ୍ର ଗହଳରୁ ଗୁମୁରି ଉଠି; ବଡ଼ କର୍କଶ ସ୍ୱରରେ ଆକଟ କଲା ମାଛରଙ୍କା, ବଡ଼ ପୋଖରୀରୁ ଚନ୍ଦନପୋଖରୀକି ଉଡ଼ିଗଲା ବେଳେ । 'ଶାନ୍ତ', 'ଶାନ୍ତ' ଘୋଷଣା କଲା ପକ୍ଷୀ—କଳହରେ ଚିର ମଧ୍ୟସ୍ଥି କଜଳପାତିଆ ।

ତାପରେ ଦ ସମୁଦ୍ର ହରିବୋଲପୁର ଗାଁ ଶେଷ ମୁଣ୍ଡ ଦେଖି ବାହାରିଲେ । ଗାଁର ଏ ଅଂଶଟି ଉଚ୍ଚ ସଡ଼କ ଉପରେ । କିଛି ଆଜ୍-ବେସ୍ଟସ୍ ବା ଟିଣ ଘର, କିଛି କୋଠାବାଡ଼ି—ଦୋକାନ, ବଜାର,

Digitized by srujanika@gmail.com

ଟ୍ରକ୍ ବସ୍ ଗହଳ । ମଝିରେ ମଝିରେ ଗୋଟେ ଗୋଟେ ବୋଷ୍ଟେଇ ଶଗଡ଼ ବି ଯାଏ ।

ହବୁ—ଗାଁ ଟା କେମିତି ସହର ହୁଏ ?

ମିଛୁ—ହଉ ହଉ ହୋଇଯାଏ ।

ହବୁ—ଆରେ, ଏତ ଗାଁ ର ଠିକ୍ ଓଲଟା । ଏମିତି କେମିତି ହେଲା ?

ମିଛୁ—ସ୍କୁଲ ଛାତ୍ରମାନଙ୍କୁ ଚୂଡ଼ାଳ ଡାଲି, ପନପରିବା, ମସଲା ମସଲ ଯୋଗାଇବାକୁ ହାଟ ବସିଲା । ତାପରେ ଷ୍ଟାମ୍ପୀ ଦୋକାନ—ବଜାର; ଦେଖୁ ଦେଖୁ ଏ ହେଲା ଏକ ବ୍ୟବସାୟ କେନ୍ଦ୍ର । ସନ୍ଧ୍ୟା ହେଲେ ସଉଦା ପତ୍ର କରିବାକୁ ଆଖପାଖ ଗାଁରୁ ଲୋକ ଆସି ଭିଡ଼ କଲେ । ତା ମଧରେ ଫୁର୍ତ୍ତି କରି ଆସୁଥିବା ଲଫଙ୍ଗା ବି କମ୍ ନାହାନ୍ତି ।

ଗାଁର ଏ ପାଖେ ଚଲା ରାସ୍ତା, ସେ ପାଖେ ସଡ଼କ । ସେ ପଟ କୋଡରି ମୋଡରି, ଏ ପଟ ସଫାସୁତରା; ସେ ପଟେ ପିକା, ଏ ପଟେ ସିଗାରେଟ୍, ସେ ପଟେ ତୋରାଣି, ଏ ପଟେ ଚୁଡାଣି ଚଳେ । ମୁଣ୍ଡଟା ଗଣ୍ଡିରୁ ଭିନେ ଦିଶେ ।

ଏ ପଟେ ଗାଁ ମାମଲତି, ସେ ପଟେ ଦଲାଲି, ସହରୀ ଠାଉଠରୀ ଚଳେ । ଏ ପାଖ ଲୋକେ ନୁଖୁରି ମାଖରି, ସେ ପାଖେ ଚହଟ ଚକ୍କଣ ।

ଚଇତା ସୋଇଁର କୋଠାବାଡ଼ ଦେଖୁଚ ? ଏ ଦିନେ ମକଦ୍ଦମଙ୍କ ଦିଠଙ୍କିଆ ବୋଲକରା ଥିଲା, ଏବେ ବଡ଼ି ବଡ଼ି କାନତରାଟି ହେଲାଣି, ବଜାରରେ ଗୋଟେ ଧାନକୁଟା କଳ, ତେଲପେଡ଼ା କଳ ପକେଇଚି । କୋଉଠୁ କୋଉଠାଏ କେଉଁଠା ମେଳିଚି; ଏବେ ତା ପରି ସେ । ତାର ଗାଁ ଏ ମୁଣ୍ଡେ ଗୋଟେ ମାଇପ, ଜୁଡ଼ା ପକାଏ । ସେ ମୁଣ୍ଡେ ଗୋଟେ

Digitized by srujanika@gmail.com

ମାଇପ, ବେଶୀ ଝୁଲୁଏ । ଗାଉଁଲି ମାଇପଟା ପଖାଳ ଖାଏ, ଢଗ ପକାଏ, ସହରୀ ମାଇପଟା ଫେସନ କରେ, କେତେ ପ୍ରକାର ଆଖି କରେ ସିନେମା ଗୀତ ବୋଲେ । ସେ ମୁଣ୍ଡେ ପୋଖରୀ ତୁଠରେ ମାଇପୀ ମେଳାରୁ କେହି ହସକୁରୀ ରସବତୀ ଏ ମୁଣ୍ଡକୁ ଗୋଟେ ଅଧେ ଢଗ ଫୋପାଡ଼ନ୍ତି –

'ଆରେ ଚଇତା
ହ ମାଇପର ଢଇତା
ତବାତ ଖାଇବୁ କି ପଖାଳ ଖାଇବୁ
ବେଳ ଥାଉଁ ଥାଉଁ କହିଥା ।'

ଏବେ ସହରର ଏ ଦୋଷ କେହି ବାଛୁ ନାହାନ୍ତି— ଓଲଟି କହୁଛନ୍ତି, 'ତାର ଧନ ଅଛି, ପୋଷୁଚି ଦଶଟା ମାଇପ, ଏଥିରେ କାହାର କଣ କହିବାର ଅଛି ?' ଏ ମୁତୁରୀକୁ ସେ ମୁତୁରୀ । ଟିକିଏ ଦୂରରେ ଆଉ ଜଣେ ମୁତୁରୀ । କାହା ଦୋଷ କିଏ ବାଛିବ ? ସୋଇଁ ପାଖେ ହାତ ପାତନ୍ତି ବହୁତ । ଧନୀ ଲୋକ ପଛେ ପଛେ ତ ଗୋଡ଼ାଣିଆ, ଖୋସାମତିଆ । ଲୋକଙ୍କ ମୁହଁ ବନ୍ଦ କରିଦେବା ଲାଗି ସେ ବି କେତୋଟି ଗୁଣ୍ଡା ପୋଷିଛି, ଲୋଡ଼ା ପଡ଼ିଲେ ସେମାନେ ଅନ୍ଧାରିଆ କରନ୍ତି ।

ସେଠି ନରୁ ମିଶ୍ରର ଓଷଦ ଦୋକାନ, ଠାଉଠଗିର ଆଡ୍‌ଡ଼ା ଜାଗା ଏଇଟା; ଦେଶୀ ବିଦେଶୀ ମାଲର ସେବକମାନେ ଜୁଟନ୍ତି; ଆଖ-ପାଖ ଥାନ ଓ ଥାନାର ମଧ୍ୟସ୍ଥୀ ସେ; ସେଠି ଥାନା ଲାଗି ଡାଲି ସଜଡ଼ା ଯାଏ, ଡାଲିକୁ ଗୁହିଁ ମାତ୍ରୁକୁ ଖସେଇ ଦିଆଯାଏ, ଲାଉଗ୍ଭେର କଥାରୁ ଗ୍ଭେରକୁ ଖ୍ଲଣ କରାଯାଏ । ଓଷଦ ବିକାରେ ନୁହେ, ଏ ବେଉପାରେ ହିଁ ନରୁର ହାତ ସବୁବେଳେ ଚକ୍‌କଣ ହୋଇଥାଏ ।

ସେ ପଟ ଗୃଷୀ ଏ ପଟକୁ ଆସି ଥାକ ମାରେ, ଦର ବରୀ ଆଉ ଛେନାପୋଡ଼ରେ ଅରୁଚ ଛଡ଼ାଏ । ସହରଟା ହଉଁ ନ ହଉଁ, କେତୁଟା ବାହାର ବେପାରୀ ଆସି ଏଠି ଦଣ୍ଡି ଛୁଡ଼ା କଲେଣି । ମଫସଲର ଧାନ,

Digitized by srujanika@gmail.com

ମୁଗ, ବରି, କୋଳଥ ଏଇ ବେପାରୀଙ୍କ ଜରିଆରେ କଟକ ମାଲଗୋଦାମକୁ ବୋହିଯାଏ ।

ଦୁର୍ଗା ପୂଜାକୁ ଗାଁ ଏ ମୁଣ୍ଡେ ମାଇକ୍ ଗର୍ଜିଲେ ସେ ମୁଣ୍ଡ କର୍ମିଡ଼ଠେ, କୋଇଲି, ହଳଦିବସନ୍ତ, କୁମ୍ଭାଟୁଆ ଆପଣା ମାନମହତ ଜଗି ଚୁପ୍ ହୋଇଯାନ୍ତି ।

ସିଆଡ଼କୁ ଆଉ ଯାଅନାହିଁ, ସମୁଦ୍ର । କାଲି ରାତିରେ କିଏ ଜମିର୍ ମହାଜନକୁ ହାଣି ଦେଇଛନ୍ତି । ରାତି ଅଧରେ ଜଟଣିରୁ ଫେରି ଦୋକାନ ବେଞ୍ଚ୍‌ରେ ଶୋଇଥିଲି । ଚମଡ଼ା ବ୍ୟବସାୟ କରେ । ପାଖରେ ଟଙ୍କାପଇସା କିଛି ଥିଲି ବୋଧହୁଏ ।

ଏଠି ଏବେ ଏମିତି କାରବାର; ସହିବାର ଧୈର୍ଯ୍ୟ ଆଉ ନାହିଁ । ନିଶାଖୋର୍ ସବୁ ଟିକେ ଟିକେ କଥାରେ ଛୁରି ଭୁଷାଭୁଷି ହୋଇ-ଯାଉଛନ୍ତି । ଘର୍‌କେ ଦଳ, କାହା ଉପରେ କାହାର ବିଶ୍ୱାସ ନାହିଁ । ଟିକେ ମୁହଁ ଫୁଲିଫୁଲିରେ ଥାନା କି କଚେରୀକି ଚାଲି ଯାଉଛନ୍ତି ।

ହେଇ ପୁଲିସ୍ ସଦଳବଳେ ଆସିଗଲେଣି । ତୁମକୁ ବିଦେଶୀ ଦେଖି କାଳେ କଣ ପଚରାଉଚରା କରିବ, ଚାଲ, ଏଠୁ ଶୀଘ୍ର ଚାଲିଯିବା ।

ଗଲି ବାଟରେ ମିଛୁ ପଚାରିଲା—ଆମ ଗାଁ କେମିତି ଲାଗିଲା ସମୁଦ୍ର ?

ସତୁ—ମିଠା ମିଠା, ପିତା ପିତା । ତମ ପାଇଁକି ଯାହା ପିତା, ମୋ ପାଇଁକି କଣ ତା ମିଠା ଲାଗିବ ?

ମିଛୁ—ନାଇଁ ଯେ···, ତମ ଆଡ଼ ଲୋକ କଣ ଏମିତି ?

ସତୁ—ଏତେ ଚାଲ୍‌ବାଜି ଶିଖି ନାହାନ୍ତି । କଥା ଦେଲେ ରଖନ୍ତି । ଧର୍ମକୁ ଡରନ୍ତି ।

Digitized by srujanika@gmail.com

ସତ୍ତୁ—ଏ ଗଡ଼ଶାଡ ଆମ ଆଡ଼େ ବ୍ୟାପିବାକୁ କେତେ କାଳ ଲାଗିବ ? ମନ୍ଦ ଭାବ, ମହାମାରୀ ପରି, ଶୀଘ୍ର ବ୍ୟାପେ । ଆଚ୍ଛା, ଗାଁସବୁ ଏମିତି ବାଳୁଙ୍ଗାବାଡ଼ ହୋଇଗଲା କାହିଁକି ?

ମିଛୁ—ଭାଗବତଟୁଙ୍ଗୀ ଆଉ ପୁରାଣ ପ୍ରଭାବ ଲୋପ ପାଇଗଲା, ଏ ଯୁଗର ନୂଆ ନୂଆ ବିଦ୍ୟା ତାର ସ୍ଥାନ ଅଧିକାର କଲା ନାହିଁ । ଅଳସ ମନରେ ପଶିଲା ଭୂତ । ମଣିଷ ହେଲା ପ୍ରକୃତିଛଡ଼ା । ହସଖୁସିଭରା ଶାନ୍ତ ଆଉ ସୌନ୍ଦର୍ଯ୍ୟର ତୀର୍ଥକ୍ଷେତ୍ରଟିଏ ଖୋଜିଲେ ଆଉ ମିଳିବ କାହୁଁ ? ଭଲ ମଣିଷଟିଏ ବି ମିଳିବ ବା କୁଆଡ଼ୁ ? ଭଲ ମଣିଷମାନେ ପ୍ରକୃତିକି ଭଲ ପାଉଥିବେ, ଜୀବଜନ୍ତୁ ବା ମଣିଷକୁ ଭଲ ପାଉଥିବେ, ପରବ୍ରହ୍ମ ଚିହ୍ନୁଥିବେ—

ସତ୍ତୁ—ଆଜି ଏ କଣ ହେଲା ? ଠଙ୍କାକୁ ଲୋକେ ଜପାମାଳୀ କଲେ ? ଠଙ୍କା ଲାଗି ଯା ଇଚ୍ଛା ତା କରିବାକୁ ପଛେଇଲେ ନାହିଁ !

ମିଛୁ—ଉପରେ ତ ଏତେ ଧୋବଧବଳିଆ ! ଭିତରଟା କୋତରା କରିବାକୁ ଘୃଣା କରୁନାହାନ୍ତି ? ଏତେ ଅସଣା କଥା ତୁଣ୍ଡେ ଧରୁଛନ୍ତି, ଏତେ ଅରୁଚିା କାମ ବା କରୁଛନ୍ତି କିପରି ?

ସତ୍ତୁ—ପରର ମନ୍ଦ ପାଞ୍ଚିଲେ ନିଜର ମନ୍ଦ ହୁଏ—ଏ ଭାବ ଆଉ ଅଛି ? ଯା ଇଚ୍ଛା ତା କଲେ ବି ଆମର କିଛି କ୍ଷତି ହବ ନାହିଁ । ରାତିକେ ହାତିଏ ଆଣିବା, ପରର ଅନିଷ୍ଟ ଘଟାଇ ନିଜର ଇଷ୍ଟ କରିବା—ଏ ଭାବ ରାଜନୀତି କରୁଚି ଗୃହଆଡ଼େ । ଭଲମାନେ କରପତ୍ର ଯୋଡ଼ି ରହିଛନ୍ତି, ସର୍ବଜ ଅଯୋଗ୍ୟ, ଅପାରଗ ବିବେଚିତ ହେଉଛନ୍ତି । ରାଜନୀତିର ଖଣ୍ଡିଆଭୂତ ପଶି ଗାଁକୁ କଣ ଏମିତି ଛିନ୍‌ଛତର କରିଦେଲା ?

ମିଛୁ—ନାଁ; ରାଜନୀତି ନାଆଁରେ ସ୍ୱାର୍ଥନୀତି ହିଁ ସବୁ ନଷ୍ଟ କଲା । ମୋ ସୁଖ ପାଇଁ ମୁଁ ଅନ୍ୟଙ୍କୁ ଦୁଃଖ ଦେବି, ସମସ୍ତଙ୍କୁ ଶ୍ରେଷ୍ଠ କରି ମୁଁ ବଡ଼ ହେବି । ଫଳରେ ସମସ୍ତେ ଶ୍ରେଷ୍ଠ ହେଲେ, ଜଣେ ହେଲେ ବଡ଼ ମଣିଷ

Digitized by srujanika@gmail.com

ବାହାରିଲେ ନାହିଁ । ଯୋଉଠି ସବୁ ଲୋକ ଆପଣାସୁଖୀ, ସେଠି ଗୋଟା ଜଗତ ହିଁ ଦୁଃଖୀ । ସଦା ପ୍ରଫୁଲ୍ଲ ପ୍ରସନ୍ନାତ୍ମା ମଣିଷଟିଏ ମିଳିବ କାହୁଁ ?

ସତ୍ତୁ—ଏ ଅବସ୍ଥା କେମିତି ସୁଧୁରିବ ?

ମିତ୍ତୁ—ଯନ୍ତ୍ର ବା ମନ୍ତ୍ର ବଳରେ କେହି ଯନ୍ତ୍ରକୁ ସୁଧାରିପାରିବେ ନାହିଁ ।

ସତ୍ତୁ—ଧର୍ମର ଗ୍ଲାନି ହେଲେ ପରା କୁଆଡ଼େ ଭଗବାନ୍ ମର୍ତ୍ତ୍ୟରେ ଅବତରନ୍ତି ? ଅବସ୍ଥା ଆଉ କେତେ ଦୂର ଅସମ୍ଭାଳ ହେଲେ ତାଙ୍କ ଆସନ ଟଳିବ ? ଦଶାବତାର ପରେ ଏକାଦଶାବତାର ହେବ ନାହିଁକି ?

ମିତ୍ତୁ—ଜ୍ଞାନୀ ବିଜ୍ଞାନୀ ମଣିଷ ହାତରେ ସେ ନିଜକୁ ଓ ସାରା ସୃଷ୍ଟିକୁ ସମ୍ଭାଳିବା ଭାର ଛାଡ଼ି ଦେଇଛନ୍ତି । ଆଗ ପରି ସେ ଆଉ ଅବତରିବେ ନାହିଁ ।

ମଣିଷ ଭଗବାନ୍‌ଙ୍କ ଅଂଶାବତାର, ସେ ସସୀମ, କିନ୍ତୁ ତାର ଶକ୍ତି ଅସୀମ । ସେ କେତେ ବଡ଼ ସେ ଜାଣେନାହିଁ । ଯୁଗ ଯୁଗ ଧରି ସେ ନିଜକୁ ଆବିଷ୍କାର କରି ଚାଲିଛି, କିନ୍ତୁ ଏ ଯାଏ ପୂରା ଆବିଷ୍କାର କରିପାରିନାହିଁ । ଅହମିକା, ଇନ୍ଦ୍ରିୟର ଅସଂଯମ, ଆତ୍ମବିଶୃଙ୍ଖଳା ପଦେ ପଦେ ସେ କାର୍ଯ୍ୟରେ ବାଧା ସୃଷ୍ଟି କରୁଛନ୍ତି । ଫଳରେ ନିଜକୁ ନବ ନବ ଭାବରେ ସୃଷ୍ଟି କରିବାକୁ ଯାଇ ସେ ଥକି ପଡ଼ୁଛି । ତା ତପସ୍ୟାର ଅନ୍ତରାୟ ତା ନିଜ ଲୋକେ । ବର୍ଣ୍ଣ, ଗୋଷ୍ଠୀ, ଜାତି ସଂଗ୍ରାମରେ ମାତି ସେ ଏବେ ଆତ୍ମଧ୍ୱଂସରେ ବ୍ରତୀ ।

ମଣିଷର ବୁଦ୍ଧି ଅକଳନ୍ତି, ସେଇ ବୁଦ୍ଧିରେ ସେ ଯେଉଁ ଜ୍ଞାନ ଅର୍ଜିଛି, ତା ମଧ୍ୟ ଅକଳନ୍ତି, କିନ୍ତୁ ସେ ତାକୁ ନେଇ ଆଣି ଥୋଇ ପାରୁନାହିଁ । ତା ସୃଷ୍ଟ ବିଜ୍ଞାନ ତାକୁ ହିଁ ନାଶ କରିବାକୁ ବସିଛି ।

ତା ଭିତରେ ଅବିରତ ଦେବାସୁର ସଂଗ୍ରାମ ଚାଲିଛି । ଅସୁରବଳ ବଳୀୟାନ୍ । ରାମରାଜ୍ୟ ବା ସ୍ୱର୍ଗରାଜ୍ୟ ସ୍ଥାପନରେ ସେମାନେ ବାଧା ଜନ୍ମାଇ ଚାଲିଛନ୍ତି ।

Digitized by srujanika@gmail.com

ଆତ୍ମମନ୍ଥନରେ ବାହାରୁଚି ପ୍ରଚଣ୍ଡ ବିଷ; ସମ୍ଭାଳି ନେଉଛନ୍ତି ମଝେ ମଝେ କେହି ନୀଳକଣ୍ଠ; ଫଳରେ ଏ ସୃଷ୍ଟି ବହୁବାର ଧ୍ୱଂସ ମୁଖରୁ ରକ୍ଷା ପାଇଛି । ଅମୃତ ଲାଭ ଏବେ ବି ସମ୍ଭବ ହୋଇପାରି ନାହିଁ । ଫଳରେ କେତେକ ସୁଖୀ, ଅଧିକାଂଶ ଦୁଃଖୀ । ଦାରିଦ୍ୟ ବିରୁଦ୍ଧରେ ସଂଗ୍ରାମ କରି ଚାଲିଛନ୍ତି । ଗୋଟାକ ପରେ ଗୋଟାଏ ଦୁର୍ଭିକ୍ଷ ମଣିଷକୁ ଗ୍ରାସ କରିଚାଲିଛି ।

ମଣିଷର ମନ ଏବେ ବି ଅସ୍ଥିର, ଚଞ୍ଚଳ । ବିବେକବୁଦ୍ଧି ଏବେ ବି ଦୁର୍ବଳ । ବିବେକ ଯେତେବେଳେ ଉଜ୍ଜ୍ୱଳତମ ନକ୍ଷତ୍ର ରୂପେ ମନ ଆକାଶରେ ଦେଖାଦେବ, ସେତେବେଳେ ମଣିଷ ଭସ୍ମାସୁରମାନଙ୍କ କବଳରୁ ନିଜକୁ ରକ୍ଷା କରିବାକୁ ସମର୍ଥ ହେବ, ଆତ୍ମନାଶରୁ ନିବୃତ୍ତ ହେବ । ବିଶ୍ୱବିବେକ ରୂପ ନେବ ମହାନ୍ ମଣିଷ ରୂପେ; ନିଜର ଆବର୍ଜନା ପଙ୍କ ମଧ୍ୟରୁ ସେ ବାହାରିବ ଜ୍ୟୋତିର୍ମୟ ସହସ୍ରଦଳ ପଦ୍ମ ପରି । ସେ ବଦଳାଇ ଦେବ ମୂଳରୁ ଚୂଳ, ନାଡ଼ରୁ ନକ୍ଷତ୍ର ।

ବି ସମୁଦ୍ର ଫେରିଲେ, ନୂଆ ଗଢ଼ି ଉଠୁଥିବା ସହରତଳୀରୁ ଏଇ ଗୋଟିଏ ଗୀତ ପଦ ସଭିଁଙ୍କ କାନରେ ବାଜୁଥିଲି—

ଅଇଲି ହେ ବନ୍ଧୁ ଭଅଲି କଲି
ବସିବାକୁ ନାଇଁ ଠାଆ
ଯୋଉ ବାଟେ ବାଟେ ଆସିଚ ବନ୍ଧୁ
ସେଇ ବାଟେ ବାଟେ ଯାଆ ।



Digitized by srujanika@gmail.com